# ପ୍ରସ୍ତାବନା

ପ୍ରକୃତିର ପ୍ରାକୃତିକ ପରିବେଶ କି ସୁନ୍ଦର ! ଏଇଥିପାଇଁ ଯେ ପ୍ରାକୃତିକ ପରିବେଶ ମଧ୍ୟରେ ପୂରିରହିଛି ନଦନଦୀ, ଝରଣା, ପାହାଡ଼, ପର୍ବତ, ବଣଜଙ୍ଗଲ ଓ ଅନେକ ପ୍ରକାର ପ୍ରାଣୀ । ଆଉ ବିଭିନ୍ନ କିସମର ପ୍ରାଣୀମାନଙ୍କୁ ଦେଖିଲେ ମନେହୁଏ ଆମର ଏ ପରିବେଶ ହିଁ ଲକ୍ଷ୍ମୀଙ୍କ ଶସ୍ୟଭଣ୍ଡାର ପରି ଜୀବଜନ୍ତୁଙ୍କ ଭଣ୍ଡାର । ବାସ୍ତବରେ ଜୀବଜଗତ୍‌ର ବୈଚିତ୍ର୍ୟ ଓ ସୌନ୍ଦର୍ଯ୍ୟ ତଥା କରାମତି କହିଲେ ନ ସରେ ! ମଣିଷ ନିଜ ସ୍ୱାର୍ଥ ପାଇଁ ବହୁ ସଂଖ୍ୟାରେ ଶିକାର କରିବା ଫଳରେ ପ୍ରାଣୀମାନଙ୍କର ଏ ଅସରନ୍ତି ଭଣ୍ଡାର ଧୀରେ ଧୀରେ ଶୂନ୍ୟ ହେବାରେ ଲାଗିପଡ଼ିଛି । ବସି ଖାଇଲେ ନଈବାଲି ସରିବା ପରି କ୍ରମାଗତ ଅତ୍ୟାଚାର, ଶିକାର ଓ ପରିବେଶ ଉପରେ ଚାପ ଫଳରେ ପ୍ରାଣୀରାଜି ଆଦି ହ୍ରାସ ପାଇବାରେ ଲାଗିଛି । ଅନେକ ଜୀବଜନ୍ତୁ ଓ ଉଦ୍ଭିଦ ଲୋପ ପାଇଗଲେଣି । ଆଉ କେତେକ ଲୋପ ହେବା ଉପରେ । ତଥାପି ଆମ କାହାର ଏଥିରେ ଖାତିର ନାହିଁ । ବାଘ, ସିଂହ, ହରିଣ, ହାତୀ, ମୂଷା ଆଦି ଠାରୁ ଆରମ୍ଭ କରି ଉଇ, ପିମ୍ପୁଡ଼ି, ମହୁମାଛି, କୀଟପତଙ୍ଗ ଆଦିର ଚରାଭୂଇଁ ଏ ପୃଥିବୀ । ଅର୍ଥାତ୍ ତିମି ପରି ବିଶାଳକାୟ ପ୍ରାଣୀଠାରୁ କ୍ଷୁଦ୍ର କ୍ଷୁଦ୍ର କୀଟପତଙ୍ଗାଦିର ସମାହାର ଏ ସୁନ୍ଦର ଗ୍ରହରେ । ଆଉ କ୍ଷୁଦ୍ର ପ୍ରାଣୀମାନଙ୍କ ମଧ୍ୟରେ ବୁଢ଼ିଆଣୀ ଏକ ଅତି ନଗଣ୍ୟ ପ୍ରାଣୀ ।

ବୁଢ଼ିଆଣୀ ହିଁ ମାକଡ଼ସା ଭାବରେ ଜଣାଶୁଣା । ପ୍ରାଣୀଟି ଖୁବ୍ ଛୋଟ ହୋଇଥିବାରୁ ନଜରରେ ପଡ଼ି ନ ଥାଏ ଅନେକଙ୍କର । ହେଲେ ବି ଏଇଟି କୀଟ ନୁହେଁ, କୀଟମାନଙ୍କର ଛଅଟି ଗୋଡ଼ ଥିବା ସ୍ଥଳେ ଏମାନଙ୍କର ଥାଏ ଆଠଟି । ତେବେ ଏ ଅଷ୍ଟପଦୀମାନଙ୍କୁ କେହି ଦେଖି ନ ଥିଲେ ମଧ୍ୟ ଏହାର ଅଦ୍ଭୁତ କୃତିକୁ ଉଣାଅଧିକେ ସମସ୍ତେ ଦେଖିଥାଆନ୍ତି ବା ଜାଣିଥାଆନ୍ତି । ସେଇଟି ହେଉଛି ସେମାନଙ୍କ ଦ୍ୱାରା ବୁଣା ଜାଲ । ଏତେ ସୁନ୍ଦର ଭାବରେ ଚୁପ୍‌ଚାପ୍ ଶୃଙ୍ଖଳିତ ରୂପେ ଜ୍ୟାମିତିକ ମାପରେ କରିବା ପରି ଜାଲଗୁଡ଼ିକ ଏମାନେ ମୁଖ୍ୟତଃ ତିଆରି କରିଥାଆନ୍ତି । ସେଥିପାଇଁ ଏମାନଙ୍କୁ କୁହାଯାଏ 'ପ୍ରାକୃତିକ ବିନ୍ଧାଣି' । ଆକାରରେ ଛୋଟ ହେଲେହେଁ ବେଶ୍ ବଡ଼ ବଡ଼ ପ୍ରାଣୀମାନଙ୍କୁ ଶିକାର କରି ଖାଇବାରେ ଏମାନେ ବେଶ୍ କୁଶଳୀ । ପୃଥିବୀରେ ଥିବା ଅନେକ ପ୍ରକାରର ବୁଢ଼ିଆଣୀମାନଙ୍କ ମଧ୍ୟରୁ କିଏ ଛୋଟ ଛୋଟ କୀଟପତଙ୍ଗାଦି ଖାଇଥାଆନ୍ତି ତ ଆଉ କିଏ ଟିକିଏ ବଡ଼ ବଡ଼ ପ୍ରାଣୀ ଅର୍ଥାତ୍ ପକ୍ଷୀ, କଙ୍କି, ଝିଟିପିଟି ଆଦି ମାରି ତାଙ୍କ ଶରୀରର ରସ ଶୋଷି ଖାଇବାରେ ଖୁବ୍ ସିଦ୍ଧହସ୍ତ । ଶିକାର କୌଶଳ ଖୁବ୍ ବିଚକ୍ଷଣ ଏମାନଙ୍କର । କିଏ ଗଛରେ ତ କିଏ ମାଟିତଳ ସୁଡ଼ଙ୍ଗରେ ଅଥବା ଆଉ କେଉଁ ବୁଢ଼ିଆଣୀ ପାଣି ମଧ୍ୟରେ ରହି ଶିକାର କରିବା ଏମାନଙ୍କର ପ୍ରକୃତି । ଏମିତି ଶିକାର କରି ପରିବେଶର କେତେକ ଅପକାରୀ ପ୍ରାଣୀମାନଙ୍କୁ ମାରି ଆମର ଅନେକ ଉପକାର କରିଥାଆନ୍ତି ଏ ବୁଢ଼ିଆଣୀଗୁଡ଼ିକ । ଏମାନେ ସମସ୍ତେ ପ୍ରାୟ ବିଷଧର । କାହାର ବିଷର ମାତ୍ରା କମ୍ ତ ଆଉ କାହାର ବେଶୀ । ଏପରିକି ଟାରାଣ୍ଟୁଲା ନାମକ ବୁଢ଼ିଆଣୀ ବିଷ ଖୁବ୍ ମାରାତ୍ମକ ବୋଲି ଏ ବୁଢ଼ିଆଣୀ ଇତିହାସ, ଗପ ଓ ଲୋକକଣ୍ଠରେ ଆଜି ବି ଶୁଣିବାକୁ ମିଳେ ।

ଆମ ପରିବେଶରେ ଥିବା କ୍ଷୁଦ୍ର ବୁଢ଼ିଆଣୀମାନଙ୍କର ପରିଚୟ, ଅବସ୍ଥିତି, ବିସ୍ତୃତି, ଆଚାର ବ୍ୟବହାର, ଶିକାର ପ୍ରଣାଳୀ, ଜାଲ ତିଆରି କୌଶଳ, ଉପକାରିତା ଓ ଅପକାରିତା, ଅଣ୍ଡା ଓ ଛୁଆମାନଙ୍କ ପ୍ରତି ମାଆ ବୁଢ଼ିଆଣୀର ମମତା ଆଦି ସଂପର୍କରେ କିଛିଟା ଧାରଣା ଦେବା ଏ ଲେଖାର ଉଦ୍ଦେଶ୍ୟ । ପୁସ୍ତକଟିରେ କେତେକ ନିର୍ଦ୍ଦିଷ୍ଟ ପ୍ରକାରର ବୁଢ଼ିଆଣୀ ସଂପର୍କରେ ବିଶଦ ଆଲୋଚନା ସହିତ କିଛି ସାଧାରଣ କଥା, ଏମାନଙ୍କ ସମ୍ବନ୍ଧରେ ଲୋକମତ ତଥା ଭ୍ରମାତ୍ମକ ଧାରଣା ଉପରେ ଆଲୋକପାତ କରାଯାଇଛି । ବିଶେଷକରି ଦୃଷ୍ଟିକୁ ଆସୁ ନ ଥିବା କ୍ଷୁଦ୍ର ଜୀବଟିର ପରିବେଶ ପ୍ରତି ଭୂମିକା ଓ ମଣିଷର ବଗିଚା, କୃଷିକ୍ଷେତ୍ର ଓ ଫଳଉଦ୍ୟାନ ଆଦିରେ କୀଟନାଶକ ଔଷଧ ପ୍ରୟୋଗ ଫଳରେ ଏମାନଙ୍କ ପ୍ରତି ଅତ୍ୟାଚାର ଯୋଗୁଁ ସଂଖ୍ୟା ହ୍ରାସ ପାଇବା ଉପରେ ଅବତାରଣା କରାଯାଇଛି । ଲେଖାଗୁଡ଼ିକୁ ଅଧ୍ୟୟନ କରି ସାଧାରଣ ଲୋକମାନଙ୍କ ମନରେ କିଛିଟା ସଚେତନତା ସୃଷ୍ଟିକରିବା ସହ ଏ ପ୍ରାଣୀମାନଙ୍କ ପ୍ରତି ଭ୍ରମଧାରଣା ଦୂର କରିପାରିଲେ ଲେଖାର ଉଦ୍ଦେଶ୍ୟ ସାଧିତ ହେବ ବୋଲି ଆଶା କରାଯାଏ । ଅନ୍ତତଃ ଏତେ କ୍ଷୁଦ୍ର ପ୍ରାଣୀ ହୋଇ ଅନେକ ଉପକାର କରୁଥିବାରୁ ଏମାନଙ୍କ ପ୍ରତି ଆମ ମନରେ ଓ ପିଲାମାନଙ୍କ ମନରେ ସହାନୁଭୂତି ଜାତ ହେଉ । ତାହାହେଲେ ଏପରି ପ୍ରାଣୀମାନେ ଆମ ପରିବେଶରୁ ଆଦୌ ହ୍ରାସ ପାଇବେ ନାହିଁ ଏବଂ ଏମାନଙ୍କ ଲୋପ ପାଇଯିବାର ସମ୍ଭାବନାକୁ ମଧ୍ୟ ସହଜରେ ଏଡ଼ାଇ ଦିଆଯାଇପାରିବ । ମୋଟାମୋଟି ବୁଢ଼ିଆଣୀ ପ୍ରତି ଜନତା, ବିଶେଷକରି ଆଗାମୀ ପିଢ଼ିମାନଙ୍କର ହୃଦୟକୁ ସ୍ପର୍ଶ ତଥା ଆକର୍ଷଣ କରାଇବାର ପ୍ରୟାସରୁ ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ 'ଅଦ୍ଭୁତ ବିନ୍ଧାଣି ବୁଢ଼ିଆଣୀ' ପୁସ୍ତକର ସୃଷ୍ଟି । ସ୍ରଷ୍ଟାଙ୍କର ଏ ସୃଷ୍ଟି ସମସ୍ତଙ୍କ ମଧ୍ୟରେ କିଛିଟା ଝଲକ ଉଦ୍ରେକ କରିବ ବୋଲି ସ୍ରଷ୍ଟା ଖୁବ୍ ଆଶାବାଦୀ ।

ବାଣୀବିହାର, ଭୁବନେଶ୍ୱର

୧୦, ଜାନୁୟାରୀ ୨୦୦୫

**ପ୍ରଫୁଲ୍ଲ କୁମାର ମହାନ୍ତି**

# ସୂଚୀପତ୍ର

# ସୃଷ୍ଟି ଓ ପ୍ରାଣିଜଗତ୍

ସୂର୍ଯ୍ୟ ଚାରିପଟେ ଥିବା ନଅଟି ଗ୍ରହ ମଧ୍ୟରୁ ପୃଥିବୀର ସ୍ଥାନ ସତରେ ସ୍ୱତନ୍ତ୍ର । ପୃଥିବୀ ଏପରି ଏକ ଗ୍ରହ ଯେ ଏ ଗ୍ରହରେ ଯାହାସବୁ ଦେଖାଯାଏ, ତାହା ଅନ୍ୟ ଗ୍ରହରେ ଦେଖାଯାଏ ନାହିଁ ବୋଲି ଜଣାଯାଏ । ପୃଥିବୀବକ୍ଷରେ ଥିବା ନଦ-ନଦୀ, ଝରଣା, ପାହାଡ଼, ପର୍ବତ, ବଣଜଙ୍ଗଲ ଓ ଜୀବଜନ୍ତୁ ଆଦି ପୃଥିବୀକୁ କରିଛନ୍ତି ଚଳଚଞ୍ଚଳ ଓ ଜୀବନ୍ତ । ବିଶେଷକରି ଉଦ୍ଭିଦମାନଙ୍କ ମଧ୍ୟରେ ପ୍ରାଣୀମାନଙ୍କର ସମାବେଶ ହିଁ ପୃଥିବୀ ପରି ଗ୍ରହର ବିଶେଷତ୍ୱ । ପ୍ରକୃତି କ'ଣ, ପ୍ରକୃତିର ମନୋରମା ଶୋଭା କିପରି ପ୍ରକାଶ ପାଏ ତଥା ଅପରୂପ ସୌନ୍ଦର୍ଯ୍ୟର ଭାବନା ହିଁ ଉପଲବ୍ଧି କରିହୁଏ ଆମର ଏ ପୃଥିବୀରୁ । ଜୀବନ୍ତ ଉଦ୍ଭିଦଗୁଡ଼ିକ ସ୍ଥିର ଭାବରେ ଠିଆହୋଇ ରହିଥିବା ବେଳେ ତା'ର କୋଳରେ ନାଚିକୁଦି ଖେଳୁଥିବା, ବୁଲୁଥିବା, ଉଡୁଥିବା ଓ ଗୁରୁଣ୍ଡି ଗୁରୁଣ୍ଡି ଯାଉଥିବା ପ୍ରାଣୀମାନେ ହିଁ ଆକୃଷ୍ଟ କରିଥା'ନ୍ତି ସମସ୍ତଙ୍କୁ । ଆଉ କେତେ ଯେ ପ୍ରାଣୀ ଏ ପୃଥିବୀ ଉପରେ ଅଛନ୍ତି ତାହା କଳନା ବା ଗଣିଗଣି କହିବା ସତରେ ବହୁତ କଷ୍ଟ । ବୈଜ୍ଞାନିକମାନେ ଆଜି ବି ନୂଆ ନୂଆ ପ୍ରାଣୀ ଆବିଷ୍କାର କରୁଛନ୍ତି । ଶୁଣିଲେ, ଦେଖିଲେ ଓ ଜାଣିଲେ ଏ କଥା ବଡ଼ ଆଶ୍ଚର୍ଯ୍ୟ ଲାଗେ । ଆଶ୍ଚର୍ଯ୍ୟ ଲାଗିଲେ ବି ଏହା ନିହାତି ସତ କଥା ।

ବର୍ତ୍ତମାନ ପ୍ରଶ୍ନ ମନକୁ ଆସୁଛି ଯେ ପ୍ରାଣୀ କ'ଣ । ହଁ ପ୍ରାଣ ଥିବା ସତ୍ତାହିଁ ପ୍ରାଣୀ । ପ୍ରାଣର ଅନ୍ୟ ନାମ ଜୀବନ ହୋଇଥିବାରୁ ପ୍ରାଣ ବା ଜୀବନ ଥିବା ସତ୍ତା ହିଁ ପ୍ରାଣୀ ବା ଜୀବ । ପୃଥିବୀ ଗର୍ଭରେ ଏ ପ୍ରାଣୀ କେଉଁଠି ଦେଖାଯାଆନ୍ତି ନାହିଁ ବୋଲି କହିହେବ ନାହିଁ । ଜଳ, ସ୍ଥଳ, ଆକାଶ, ଗୁମ୍ଫା, ଗଛକୋରଡ଼, ମାଟିତଳ ଓ ପାହାଡ଼-ପର୍ବତ ତଥା ମରୁଭୂମି ଆଦି ପ୍ରତ୍ୟେକ ସ୍ଥାନରେ ଦେଖାଯାଆନ୍ତି କିଛି କିଛି ପ୍ରାଣୀ । ଏପରିକି ଜଳଭାଗର ପ୍ରାଣୀମାନଙ୍କୁ ଦେଖିଲେ କିଏ ମଧୁର ଜଳରେ ତ କିଏ ଲୁଣି ଜଳରେ ଅଥବା ଆଉ କିଏ କ୍ଷାର ଜଳରେ ବିଚରଣ କରୁଥାଆନ୍ତି । ଆଉ ସ୍ଥଳଭାଗ ଦେଖିଲେ କିଏ ମାଟି ଉପରେ ଘୁଷୁରି ଘୁଷୁରି ଯାଏ ତ କିଏ ମାଟିତଳେ ଲୁଚିକରି ଅଥବା କିଏ ମରୁଭୂମିର ଶୁଖିଲା ବାଲିରେ ଚାଲି ଚାଲି ଯିବାବେଳେ ଆଉ କେତେକ ମାଟି ଉପରେ ହୁଙ୍କାକରି ରୁହନ୍ତି । ତା' ସାଙ୍ଗକୁ ଆକାଶରେ ଉଡ଼ି ବୁଲୁଥିବା ପକ୍ଷୀମାନଙ୍କ କଥା କହିଲେ ନ ସରେ । ସେମାନେ ତ ଆକାଶର ରାଜା । ପ୍ରାଣୀମାନଙ୍କର ଏସବୁ ବୈଚିତ୍ର୍ୟ ଦେଖିଲେ ବିସ୍ମୟ ଲାଗେ ନିଶ୍ଚୟ ।

ଆଉ ଏ ସବୁ ବିସ୍ମୟପୂର୍ଣ୍ଣ ଆକାର, ବ୍ୟବହାର ଓ ଚାଲିଚଳଣି ଆଦି ପ୍ରାଣୀମାନଙ୍କର ଦେଖିଲେ ମନକୁ ପୁଣି ଢୁକିଯାଏ ଯେ ସତରେ କେତେ ପ୍ରକାର ପ୍ରାଣୀ ଆମର ଏ ପୃଥିବୀରେ ଦେଖାଯାଆନ୍ତି । ହଁ ଉତ୍ତରଟି ଅତି ସରଳ । ଗଣି ନ ହେଲେ ମଧ୍ୟ ସଂଖ୍ୟା ଓ ପ୍ରକାର ଅନେକ । ସେଥିପାଇଁ ପ୍ରାଣୀମାନଙ୍କୁ ଦେଖିବାକୁ, ସେମାନଙ୍କ ବିଷୟରେ ଶୁଣିବାକୁ ଓ ତାଙ୍କ ସହ ଖେଳିବାକୁ ଭଲ ଲାଗେ । ତେବେ ଏ ପ୍ରାଣୀସବୁ କେବେ ଓ କିପରି ସୃଷ୍ଟି ହେଲେ ?

### ପୃଥିବୀପୃଷ୍ଠରେ ଜୀବର ସୃଷ୍ଟି

ପୃଥିବୀ ଏକମାତ୍ର ଗ୍ରହ ଯେଉଁ ଗ୍ରହରେ କି ଜୀବସତ୍ତା ସମ୍ଭବ ହୋଇଛି । ତେବେ ଆମର ଏ ପୃଥିବୀ ଓ ତାହା ଉପରେ ଚଳପ୍ରଚଳ ବା ବସବାସ କରୁଥିବା ଜୀବମାନଙ୍କର ସୃଷ୍ଟି କେବେ ଓ କିପରି ହୋଇଛି ତାହା ଠିକ୍ ଭାବରେ କହିବା ଏ ପର୍ଯ୍ୟନ୍ତ କଷ୍ଟ ହୋଇଛି । ପ୍ରାଣୀମାନଙ୍କର ଆବିର୍ଭାବର ପ୍ରଶ୍ନ ହିଁ ବୈଜ୍ଞାନିକମାନଙ୍କ ପାଇଁ ଏକ ଜଟିଳ ସମସ୍ୟା । ତେବେ ଆଜକୁ ପ୍ରାୟ ଚାରିଶହ ପଚାଶ କୋଟି ବର୍ଷ



ପ୍ରାଣୀମାନଙ୍କର ସୃଷ୍ଟି ଓ କ୍ରମବିକାଶ

ପୂର୍ବେ ସୂର୍ଯ୍ୟ ଦେହରୁ କେତେକ ଅଂଶ ବିଚ୍ଛିନ୍ନ ହୋଇ ତା'ର ଚତୁଃପାର୍ଶ୍ୱରେ ପ୍ରବଳ ବେଗରେ ଘୂରିବାକୁ ଲାଗିଲା । ଫଳରେ ପୃଥିବୀ, ଅନ୍ୟାନ୍ୟ ଗ୍ରହ ଓ ଉପଗ୍ରହମାନଙ୍କର ସୃଷ୍ଟି ହେଲା ବୋଲି କେତେକ ବୈଜ୍ଞାନିକ ମତପୋଷଣ କ‌ ସୂର୍ଯ୍ୟ ଜ୍ୱଳନ୍ତ ଗ୍ୟାସୀୟ ପଦାର୍ଥରେ ଗଠିତ । ଲକ୍ଷ ଲକ୍ଷ ବର୍ଷଧରି ପୃଥିବୀ ଉତ୍ତପ୍ତ ଓ ଜ୍ୱଳନ୍ତ ବାଷ୍ପରେ ପରିପୂର୍ଣ୍ଣ ଥିଲା । ସୂର୍ଯ୍ୟ ଠାରୁ ଦୂରେଇଯିବା ହେତୁ ପୃଥିବୀ କାଳକ୍ରମେ ଶୀତଳ ହେବାକୁ ଲାଗିଲା ଓ ଗୋଲ ଆକାର ଧାରଣ କଲା । ତାହାର ଉପରିଭାଗ କ୍ରମଶଃ ସଙ୍କୁଚିତ ଓ

କଠିନ ହୋଇ ଉଚ୍ଚ ନୀଚ ଭୂଇଁରେ ପରିଣତ ହେଲା । ଆଜି ବି ପୃଥିବୀ ଗର୍ଭ ମଧ୍ୟକୁ ଯେତେ ଯେତେ ଖୋଳିଯିବା ଆମେ ସେତେ ଗରମ ଅନୁଭବ କରିପାରିବା । ପୃଥିବୀକୁ ଘେରିରହିଥିବା ଉତ୍ତପ୍ତ ଜଳୀୟବାଷ୍ପ ଥଣ୍ଡା ହେବାରୁ ପୃଥିବୀପୃଷ୍ଠରେ ଯୁଗ ଯୁଗ ଧରି ଅନବରତ ବୃଷ୍ଟିପାତ ହେଲା । ନିମ୍ନ ଭୂମିସବୁ ଜଳପୂର୍ଣ୍ଣ ହୋଇ ଜଳଭାଗରେ ପରିଣତ ହେଲା ଏବଂ ଉଚ୍ଚ ଭୂମିଗୁଡ଼ିକ ହୋଇଗଲା ସ୍ଥଳଭାଗ । ଭୂଗର୍ଭସ୍ଥ ଉତ୍ତପ୍ତ ଗ୍ୟାସୀୟ ପଦାର୍ଥ ଏବଂ ଭୂପୃଷ୍ଠରେ ହେଉଥିବା ବୃଷ୍ଟିପାତ, ବାୟୁପ୍ରବାହ ଓ ହିମବାହ ଆଦି ଯୋଗୁଁ ପୃଥିବୀର ଆକାର ତଥା ପରିବେଶରେ କେତେକ ପରିବର୍ତ୍ତନ ଘଟିଲା । କ୍ରମେ ସାଗର, ମହାସାଗର, ପାହାଡ଼, ପର୍ବତ ଓ ନଦୀନାଳ ଆଦି ସୃଷ୍ଟି ହେଲା । ଏ ସବୁ ପରିବର୍ତ୍ତନ ରାତାରାତି ନ ହୋଇ ଧୀରେ ଧୀରେ ହୋଇଥିଲା ବୋଲି ଜଣାଯାଏ ।

ଭୂପୃଷ୍ଠର ଉପରୋକ୍ତ ପରିବର୍ତ୍ତନ ଯୋଗୁଁ ଜଳବାୟୁରେ ମଧ୍ୟ ପରିବର୍ତ୍ତନ ଦେଖାଦେଲା । ଜଳବାୟୁର ପରିବର୍ତ୍ତନକ୍ରମେ ଜୀବଜଗତ୍‌ରେ ଉତ୍ପତ୍ତି ଓ ବିକାଶରେ ସହାୟକ ହେଲା । ତେଣୁ ଜୀବ ସୃଷ୍ଟିର ଏ ହେଉଛି ଅୟମାରମ୍ଭ ପର୍ଯ୍ୟାୟ । ପ୍ରାୟ ଶହେକୋଡ଼ିଏ କୋଟି ବର୍ଷ ପୂର୍ବେ ପୃଥିବୀର ଜଳଭାଗରେ ପ୍ରଥମେ ଏକପ୍ରକାର ଏକକୋଷୀ ପ୍ରାଣୀ (Unicellular Animal)ର ସୃଷ୍ଟି ହେଲା । କେତେକ ଏ ପ୍ରକାର ପ୍ରାଣୀକୁ 'ଜେଲି' ବୋଲି ମଧ୍ୟ କୁହନ୍ତି । ଏହା ଶରୀରରେ ଅସ୍ଥି ବା କଠିନ ବାହ୍ୟ ଆବରଣ କିଛି ନ ଥିଲା । କାଳକ୍ରମେ ଜେଲିରୁ ବିଭିନ୍ନପ୍ରକାର ଅମେରୁଦଣ୍ଡୀ ପ୍ରାଣୀ (Invertebrates), ତା' ପରେ ଉଭୟଚର ପ୍ରାଣୀ ଓ ଶେଷରେ ସ୍ଥଳଚର ପ୍ରାଣୀମାନେ ଆବିର୍ଭାବ ହୋଇଥିଲେ । ତେବେ ମେରୁଦଣ୍ଡୀ ଓ ଅମେରୁଦଣ୍ଡୀ ଯେତେ ସବୁ ପ୍ରାଣୀ ଦୃଷ୍ଟିଗୋଚର ହୋଇଥିଲେ ଏ ସମସ୍ତ ପ୍ରାଣୀମାନେ ପ୍ରଥମେ ଜଳଭାଗ, ତା'ପରେ ଜଳଭାଗ ଓ ସ୍ଥଳଭାଗ ଓ ଶେଷରେ କେବଳ ସ୍ଥଳଭାଗରେ ଦେଖାଯାଇଥିଲେ । ତେବେ ପ୍ରଥମେ ସବୁ ଅମେରୁଦଣ୍ଡୀ ଓ ପରେ ପରେ ମେରୁଦଣ୍ଡୀ ପ୍ରାଣୀମାନେ ସୃଷ୍ଟି ହୋଇଥିବାରୁ ବିଶ୍ୱାସ କରାଯାଏ । ସବୁ ପ୍ରାଣୀର ସୃଷ୍ଟି ପରେ ସବୁଠାରୁ ଶ୍ରେଷ୍ଠ ପ୍ରାଣୀ ମନୁଷ୍ୟର ଉଦ୍ଭବ ହୋଇଥିଲା । ଏମିବା, ସ୍ପଞ୍ଜ, ହାଇଡ୍ରା, କୃମି, ଚିଆ, କୀଟପତଙ୍ଗ, ଗେଣ୍ଡା ଓ ଶାମୁକା, ସମୁଦ୍ରତାରା, ମାଛ, ବେଙ୍ଗ, ଝିଟିପିଟି, ପକ୍ଷୀ ଓ ବାଘ, ହାତୀ ପରି ଅନେକ ପ୍ରକାର ପ୍ରାଣୀର ସମାବେଶ ହିଁ ଆଶ୍ଚର୍ଯ୍ୟ କରେ ସମସ୍ତଙ୍କୁ । ଏତେଗୁଡ଼ିଏ ପ୍ରାଣୀଙ୍କୁ ଶୃଙ୍ଖଳିତ ଭାବରେ ଜାଣିବାପାଇଁ ଓ ମନେରଖିବା ପାଇଁ ଜୀବବିଜ୍ଞାନୀମାନେ ଏ ସମସ୍ତ ପ୍ରାଣୀମାନଙ୍କୁ ଭଲଭାବରେ ଭାଗ ଭାଗ କରିଦେଇଛନ୍ତି । ସୃଷ୍ଟି ଆରମ୍ଭରୁ ଜନ୍ମ ନେଇଥିବା ଏକକୋଷୀ ପ୍ରାଣୀ ଏମିବା ଠାରୁ ଆରମ୍ଭ କରି ଶେଷରେ ସୃଷ୍ଟି ହୋଇଥିବା ମନୁଷ୍ୟ ପର୍ଯ୍ୟନ୍ତ ପ୍ରାଣୀମାନେ ବିଭିନ୍ନ ଭାଗରେ ବିଭକ୍ତ । ସେମାନଙ୍କର ଆକାର, ଗଠନ, ପ୍ରକୃତି ଓ ବ୍ୟବହାରକୁ ନେଇ କରାଯାଇଛି ଏ ବିଭାଜନ । ଏବେ ଦେଖିବା ବିଭାଜନଗୁଡ଼ିକ କ'ଣ କ'ଣ ।

ପୃଥିବୀପୃଷ୍ଠରେ ଏତେଗୁଡ଼ିଏ ପ୍ରାଣୀ ଅଛନ୍ତି କହିଲେ ନ ସରେ । ସବୁଗୁଡ଼ିକୁ ଜାଣିବା, ଚିହ୍ନିବା ଓ ମନେରଖିବା ସମସ୍ତଙ୍କ ପକ୍ଷରେ ବି କଷ୍ଟ । ତଥାପି ସୁବିଧାରେ ବୁଝିବାପାଇଁ ଜୀବବିଜ୍ଞାନୀମାନେ ପ୍ରାଣିଜଗତ୍‌କୁ ଭାଗ ଭାଗ କରି ଦେଇଛନ୍ତି । ତେବେ ସମଗ୍ର ପ୍ରାଣିଜଗଦ୍ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ ଯଥା – (୧) ଅମେରୁଦଣ୍ଡୀ ଓ (୨) ମେରୁଦଣ୍ଡୀ ।

ଅମେରୁଦଣ୍ଡୀ ପ୍ରାଣୀମାନଙ୍କର ପିଠି ପାଖରେ ସିଧା ବାଡ଼ିପରି ମେରୁଦଣ୍ଡ (Vertebral Column) ଦେଖାଯାଏ ନାହିଁ; ମାତ୍ର ମେରୁଦଣ୍ଡୀ ପ୍ରାଣୀମାନଙ୍କର ପିଠି ପାଖରେ ଗୋଟିଏ ଲମ୍ବ ବାଡ଼ି ପରି ଆକାର ରହିଥାଏ । ଏହାକୁ କୁହାଯାଏ ମେରୁଦଣ୍ଡ । ଏହା ପ୍ରାଣୀକୁ ସିଧା ଭାବରେ ରଖିବାରେ ସହାୟକ ହୋଇଥାଏ । ଏଥିପାଇଁ ମେରୁଦଣ୍ଡୀ ପ୍ରାଣୀମାନଙ୍କର ଆକାର ନିର୍ଦ୍ଦିଷ୍ଟ । ବର୍ତ୍ତମାନ ପ୍ରତ୍ୟେକ ପ୍ରାଣୀ ବିଭାଗର ବିଶେଷତ୍ୱ ଦେଖିବା କ'ଣ ।




ପ୍ରାଣିଜଗତର ବିଭାଜନ

## ଅମେରୁଦଣ୍ଡୀ ପ୍ରାଣୀ

ସୃଷ୍ଟି ଆରମ୍ଭରୁ ଯେଉଁ ଜୀବମାନେ ସୃଷ୍ଟି ହୋଇଥିବାର ଜଣାଯାଏ ସେମାନେ ହେଉଛନ୍ତି ଅମେରୁଦଣ୍ଡୀ । ତେବେ ଅମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରୁ ଯେଉଁମାନେ ସର୍ବ ପ୍ରଥମେ ଆବିର୍ଭାବ ହୋଇଥିଲେ ସେମାନଙ୍କର ଆକାର ନିର୍ଦ୍ଦିଷ୍ଟ ନୁହେଁ । ଏହାର ଉଦାହରଣ ହେଉଛନ୍ତି ଏମିବା ଓ ସ୍ପଞ୍ଜ ଆଦି ପ୍ରାଣୀମାନେ । ତା'ପରେ ନିର୍ଦ୍ଦିଷ୍ଟ ଆକାର ଥିବା ପ୍ରାଣୀମାନେ କ୍ରମଶଃ ସୃଷ୍ଟି ହୋଇଥିଲେ । ସେମାନଙ୍କ ବିଷୟରେ ବର୍ତ୍ତମାନ ଭଲଭାବରେ ଅନୁଧ୍ୟାନ କରିବା ।




କେତେକ ଏକକୋଷୀ ପ୍ରାଣୀ

**୧. ଏକକୋଷୀ ପ୍ରାଣୀ** (Protozoa) — ଏକକୋଷୀ ପ୍ରାଣୀଗୁଡ଼ିକ ଖୁବ୍ ସାନ । ଖାଲି ଆଖିକୁ ଏମାନେ ଦେଖାଯାଆନ୍ତି ନାହିଁ । ଦେଖିବାକୁ ହେଲେ ଅଣୁବୀକ୍ଷଣ ଯନ୍ତ୍ର ଆବଶ୍ୟକ ହୋଇଥାଏ । ମଧୁର

ଜଳ, ସମୁଦ୍ର ଓ ମାଟି ମଧ୍ୟରେ ଏମାନେ ଦେଖାଯାଆନ୍ତି । ସମଗ୍ର ଶରୀର ମାତ୍ର ଗୋଟିଏ କୋଷରେ ଗଠିତ । କେତେକ ଏକକୋଷୀ ମୁକ୍ତ ଭାବରେ ଚଳପ୍ରଚଳ କରିବା ବେଳେ ଆଉ କେତେକ ପରଜୀବୀ (Parasitc) ଅଟନ୍ତି । ଏମିବା, ପାରାମେସିୟମ୍, ୟୁଗ୍ଲିନା ଓ ଭର୍ଟିସେଲା ଆଦି ସାଧାରଣ ଏକକୋଷୀ ଓ ମ୍ୟାଲେରିଆ ରୋଗ ସୃଷ୍ଟିକାରୀ ପ୍ଲାସ୍‌ମୋଡ଼ିୟମ୍ *(Plasmodium)* ନାମକ ଏକକୋଷୀ ହେଉଛି ପରଜୀବୀ ।

**୨. ଛିଦ୍ରାଳ ପ୍ରାଣୀ** (Porifera) — ଛିଦ୍ରାଳ ପ୍ରାଣୀମାନଙ୍କର ଦେହସାରା ଛିଦ୍ର ରହିଥିବାରୁ ନାମକରଣ ଏପରି ହୋଇଛି । ଏମାନେ ମୁଖ୍ୟତଃ ସାଗରରେ ଦେଖାଯାଆନ୍ତି; ମାତ୍ର ଖୁବ୍ କମ୍‌ସଂଖ୍ୟକ ସ୍ପଞ୍ଜ ମଧୁର ଜଳରେ ଥାଆନ୍ତି । ତେବେ ଏ ସମସ୍ତ ପାଣି ଜଳଚର । ଆକାର ଭିନ୍ନ ଭିନ୍ନ । ଅନେକ ସମୟରେ ହାତ ଅଙ୍ଗୁଳି ପରି ଆକାର ବାହାରି ରହିଥିବାର ଦେଖାଯାଏ । ଶରୀରଟି ଫମ୍ପା ନଳୀ ପରି । ବିଭିନ୍ନ ପ୍ରକାର ସ୍ପଞ୍ଜ ଏ ପ୍ରକାର ପ୍ରାଣୀର ଉଦାହରଣ ।




କେତେକ ସ୍ପଞ୍ଜ ଜାତୀୟ ପ୍ରାଣୀ

**୩. ଏକନଳିଦେହୀ ପ୍ରାଣୀ** (Coelenterata) – ଏମାନଙ୍କ ଶରୀର ମଧ୍ୟରେ ଅନ୍ତ୍ରନଳୀ ପରି ଆକାର ଦେଖାଯାଉଥିବାରୁ ନାମକରଣ ଏକନଳିଦେହୀ ବୋଲି କରାଯାଇଛି । ତା' ଛଡ଼ା ଏମାନଙ୍କ ଶରୀରଟିରେ ଦୁଇଟି ସ୍ତର ମଧ୍ୟ ଦେଖାଯାଏ । ତାହା ହେଉଛି ବାହ୍ୟସ୍ତର ଓ ଅନ୍ତଃସ୍ତର । ଶରୀରର ଗୋଟିଏ ପାଖରେ ଏକ ମୁହଁ ରହିଥାଏ ଏବଂ ଏ ମୁହଁ ଚାରିପଟ କର୍ଷିକା (Tentacle)ରେ ପୂର୍ଣ୍ଣ । ହାଇଡ୍ରା, ଜେଲିମାଛ ଓ ପ୍ରବାଳ ଆଦି ଏ ପ୍ରକାର ପ୍ରାଣୀରେ ଅନ୍ତର୍ଭୁକ୍ତ ।



ହାଇଡ୍ରା



ଅରେଲିଆ



ଯୁଦ୍ଧର ପର୍ତ୍ତୁଗୀଜ୍ ମନୁଷ୍ୟ (ଫାଇସାଲିଆ)



ସମୁଦ୍ର ଏନେମୋନ୍



ସମୁଦ୍ର ପଙ୍ଖା



ଛତୁ କୋରାଲ (ପ୍ରବାଳ)

କେତେଗୁଡ଼ିଏ ଏକନଳିଦେହୀ ପ୍ରାଣୀ

**୪. କୃମିଜାତୀୟ ପ୍ରାଣୀ** (Helminthes) – କୃମିମାନଙ୍କୁ ଉଣା ଅଧିକେ ସମସ୍ତେ ଚିହ୍ନିଥାଆନ୍ତି । କେତେକ ସରୁ ଲମ୍ବାଳିଆ ଓ ଆଉ କେତେକ ଚେପଟା ଆକାରର ଥାଆନ୍ତି । ମୁକ୍ତ ଭାବରେ କେତେଗୁଡ଼ିଏ ବିଚରଣ କରୁଥିବା ବେଳେ ଆଉ କେତେକ ପରଜୀବୀ ଅଟନ୍ତି । ଅଙ୍କୁଶ କୃମି (Hookworm), ବାତଜ୍ୱର କୃମି (Filarial worm) ଓ ଦଶିପୋକ (Pin- worm) ଆଦି ଏ ପ୍ରକାର ପ୍ରାଣୀର ଉଦାହରଣ ।




କୃମିଜାତୀୟ କେତେକ ପ୍ରାଣୀ

**୫. ଅଙ୍ଗୁରୀୟମାଳ ପ୍ରାଣୀ** (Annelida) – ଜିଆ ଓ ଜୋକ ଆଦି ପ୍ରାଣୀ ଏ ବିଭାଗରେ ସ୍ଥାନ ପାଆନ୍ତି । ଏ ପ୍ରାଣୀମାନଙ୍କର ଶରୀର କେତେଗୁଡ଼ିଏ ଗୋଲାକାର ମୁଦିପରି ଆକାରରେ ତିଆରି ହୋଇଥିବାରୁ ଏପରି ନାମ କରାଯାଇଛି । ପ୍ରାଣୀମାନଙ୍କୁ ବାହାରୁ ଦେଖିଲେ ଶରୀରଟି ଭାଗ ଭାଗ ହୋଇଥିବାର ଜଣାପଡ଼େ । ଏମାନଙ୍କ ମଧ୍ୟରେ କେତେକଙ୍କର ରକ୍ତ ଲାଲ ଓ ଆଉ କେତେକଙ୍କର ରକ୍ତ ନୀଳ ।




କେତେକ ଅଙ୍ଗୁରୀୟମାଳ ପ୍ରାଣୀ

**୬. ସନ୍ଧିପଦ ପ୍ରାଣୀ** (Arthropoda) – ପ୍ରାଣିଜଗତ୍‌ର ସନ୍ଧିପଦ ହେଉଛି ବୃହତ୍ତମ ପର୍ବ (Phylum) । ଶରୀରଟି ପ୍ରାୟ ତିନିଭାଗରେ ବିଭକ୍ତ ଯଥା – ମୁଣ୍ଡ, ଶିରୋବକ୍ଷ ବା ଛାତି ଓ ପେଟ । ଏ ପ୍ରାଣୀମାନଙ୍କର ବିଶେଷତ୍ୱ ହେଉଛି ଯୋଡ଼ା ଗୋଡ଼ (Jointed Legs) । ଅର୍ଥାତ୍ ପ୍ରତ୍ୟେକ ଗୋଡ଼ କେତେ ଖଣ୍ଡ ଅଂଶ ଯୋଡ଼ିହୋଇ ରହିଥାଏ । ଏହାର ଉଦାହରଣ ହେଉଛି ପିମ୍ପୁଡ଼ି, ପ୍ରଜାପତି, କଙ୍କଡ଼ା, ତେଲୁଣୀପୋକ, କଙ୍କଡ଼ା ବିଛା ଓ ଉକୁଣି, ଆଦି ପ୍ରାଣୀ ।




କେତେଗୁଡ଼ିଏ ସନ୍ଧିପଦ ପ୍ରାଣୀ

୭. **ଶମ୍ବୁକ ପ୍ରାଣୀ** (Mollusca) – ଶମ୍ବୁକ ପ୍ରାଣୀଗୁଡ଼ିକର ଶରୀର ମାଂସଳ ଏବଂ ଏହା କଠିନ ଖୋଳପା (Shell) ଦ୍ୱାରା ଆବୃତ୍ତ । ଏମାନେ ସ୍ଥଳଭାଗ, ମଧୁର ଜଳ ଓ ସମୁଦ୍ର ଜଳରେ ଦେଖାଯାଆନ୍ତି । ଜାପାନ ପରି କେତେକ ଦେଶର ଲୋକମାନଙ୍କର ଶମ୍ବୁକ ମାଂସ ଅତ୍ୟନ୍ତ ପ୍ରିୟ । ଆମ ରାଜ୍ୟର ବି କିଛି ଲୋକ ଗେଣ୍ଡା ଓ ଶାମୁକା ମାଂସ ଖାଇଥାଆନ୍ତି । ଗେଣ୍ଡା, ଶାମୁକା, କଉଡ଼ି, ଶଙ୍ଖ, ଅକ୍ଟୋପସ୍ ଓ ସେପିଆ ଆଦି ପ୍ରାଣୀ ଶମ୍ବୁକ ବିଭାଗର । ମୁକ୍ତା (Pearl) ଏ ବିଭାଗର ଏକ ନିର୍ଦ୍ଦିଷ୍ଟ ପ୍ରକାର ଶମ୍ବୁକ ଶରୀର ମଧ୍ୟରେ ତିଆରି ହୋଇଥାଏ ଓ ମିଳିଥାଏ । ପ୍ରାଣିଜଗତ୍‌ର ଏହା ହେଉଛି ଦ୍ୱିତୀୟ ବୃହତ୍ତମ ପର୍ବ ।



ଗେଣ୍ଡା



ଶାମୁକା



ଅକ୍ଟୋପସ୍



ମୁକ୍ତା ତିଆରି କରିବା ଶାମୁକା



କଉଡ଼ି



ଏକ ପ୍ରକାର ଶଙ୍ଖ

ଶମ୍ବୁକ ବିଭାଗର କେତେକ ପ୍ରାଣୀ

୮. **କଣ୍ଟକତ୍ୱକ ପ୍ରାଣୀ** (Echinodermata) – ଅମେରୁଦଣ୍ଡୀ ବିଭାଗର ଶେଷପ୍ରକାର ପ୍ରାଣୀ ହେଉଛନ୍ତି କଣ୍ଟକତ୍ୱକ । ଦେହସାରା ଏମାନଙ୍କର କଣ୍ଟାପରି ଆକାରରେ ପୂର୍ଣ୍ଣ ହୋଇଥିବାରୁ ଏପରି ନାମିତ କରାଯାଇଛି । ସମସ୍ତଙ୍କର ନ ହେଲେ ବି ଅଧିକାଂଶ ପ୍ରାଣୀଙ୍କର ଶରୀରରେ ଛୁଞ୍ଚିପରି ଆକାର ରହିଥାଏ । ଏ ବିଭାଗରେ ଯେଉଁ ପ୍ରାଣୀମାନେ ଅନ୍ତର୍ଭୁକ୍ତ ସେମାନେ ହେଉଛନ୍ତି ସମୁଦ୍ର ତାରା, ସମୁଦ୍ର କାକୁଡ଼ି ଓ ସମୁଦ୍ର କଇଁ ଇତ୍ୟାଦି ପ୍ରାଣୀ । ଏ ପ୍ରାଣୀଗୁଡ଼ିକ ମୁଖ୍ୟତଃ ସାଗର ଗର୍ଭରେ ଦେଖାଯାଆନ୍ତି ।



ସମୁଦ୍ର ତାରା



ପିଠା ଶଲ୍ୟକନ୍ଦୁକ



ସମୁଦ୍ର କାକୁଡ଼ି



ସମୁଦ୍ର ଶଲ୍ୟକନ୍ଦୁକ



ଭଙ୍ଗୁର ତାରା

କଣ୍ଟକତ୍ୱକର କେତେକ ପ୍ରାଣୀ

## ମେରୁଦଣ୍ଡୀ ପ୍ରାଣୀ

ଅମେରୁଦଣ୍ଡୀ ପ୍ରାଣୀମାନଙ୍କ ପରେ ମେରୁଦଣ୍ଡୀ ପ୍ରାଣୀମାନଙ୍କର ସୃଷ୍ଟି ବୋଲି ବିବର୍ତ୍ତନବାଦର ମତ । ମେରୁଦଣ୍ଡୀ ପ୍ରାଣୀମାନଙ୍କର ମୁଖ୍ୟ ବୈଶିଷ୍ଟ୍ୟ ହେଉଛି ଏକ ଟାଣ ଖପୁରି ମଧ୍ୟରେ ମସ୍ତିଷ୍କର ଅବସ୍ଥିତି, ଦୁଇଯୋଡ଼ା ଅଙ୍ଗପ୍ରତ୍ୟଙ୍ଗ ଓ ହିମୋଗ୍ଲୋବିନ୍ (Haemoglobin) ନାମକ କଣିକା ଯୋଗୁଁ ଲାଲ ରକ୍ତ । ମେରୁଦଣ୍ଡୀ ପ୍ରାଣୀଗୁଡ଼ିକ ମୁଖ୍ୟତଃ ପାଞ୍ଚଭାଗରେ ବିଭକ୍ତ ଯଥା – ମତ୍ସ୍ୟ, ଉଭୟଚରୀ, ସରୀସୃପ, ପକ୍ଷୀ ଓ ସ୍ତନ୍ୟପାୟୀ ।

**୧. ମତ୍ସ୍ୟ** (Pisces) – ମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରେ ମାଛଗୁଡ଼ିକ ଅତ୍ୟନ୍ତ ପରିଚିତ ପ୍ରାଣୀ । ଏମାନେ ସଂପୂର୍ଣ୍ଣ ଭାବରେ ଜଳଚର । ମଧୁର ଜଳ, ଲୁଣି ଜଳ ଓ କ୍ଷାର ଜଳ ଆଦି ସ୍ଥାନ ମାଛମାନଙ୍କର ଘର । ଶରୀର ଏମାନଙ୍କର କାତିରେ ପୂର୍ଣ୍ଣ । ଏମାନଙ୍କର ହୃତ୍‌ପିଣ୍ଡ ଦୁଇଟି କୋଠରିରେ ବିଭକ୍ତ । ଅଭ୍ୟାସ ଏମାନଙ୍କର ଅଣ୍ଡାଦେବା । ସୁପରିଚିତ ରୋହି, ଭାକୁର, ଚାନ୍ଦି, ଶାଙ୍କୁଚ ଓ ସମୁଦ୍ରଘୋଡ଼ା ଆଦି ବିଭିନ୍ନ ପ୍ରକାରର ମାଛ ଏହି ଶ୍ରେଣୀର ।



ରୋହୀ



ସମୁଦ୍ର ଘୋଡ଼ା



ଝିଙ୍କ ମାଛ

କେତୋଟି ମାଛ

**୨. ଉଭୟଚରୀ** (Amphibia) – ଉଭୟଚରୀ ପ୍ରାଣୀଗୁଡ଼ିକ ଜଳ ଓ ସ୍ଥଳ ଉଭୟ ସ୍ଥାନରେ ଦେଖାଯାଉଥିବାରୁ ନାମକରଣ ଏପରି ହୋଇଛି । ଏ ପ୍ରାଣୀମାନଙ୍କର ଶରୀର ଚର୍ମ ଉପରେ କିଛି ଆବୃତ ହୋଇ ନ ଥାଏ କି ବାହ୍ୟ କର୍ଣ୍ଣ ମଧ୍ୟ ନ ଥାଏ । ହୃତ୍‌ପିଣ୍ଡଟି ତିନୋଟି କୋଠରି । ଅଣ୍ଡାଦେବା ଏମାନଙ୍କର ମଧ୍ୟ ଅଭ୍ୟାସ । ବିଭିନ୍ନ ପ୍ରକାର ବେଙ୍ଗ, ନିଉଟ୍ (Newt) ଓ ସାଲାମାଣ୍ଡର (Salamander) ଆଦି ପ୍ରାଣୀ ଏ ଶ୍ରେଣୀରେ ଅନ୍ତର୍ଭୁକ୍ତ ।



ବେଙ୍ଗ



ସିସିଲିଆ



ୟୁରିଓଟିଫ୍ଲସ୍



ସାଲାମାଣ୍ଡର

ଉଭୟଚରୀ ଶ୍ରେଣୀରୁ କେତୋଟି

**୩. ସରୀସୃପ** (Reptilia) – ମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରେ ସରୀସୃପଗୁଡ଼ିକ ପ୍ରଥମେ ସ୍ଥଳଭାଗରେ ବିଚରଣ କରିଥିବାର ଜଣାଯାଏ । ସମଗ୍ର ଶରୀର ଏମାନଙ୍କର କଠିନ କାତି (Scute)ରେ ପୂର୍ଣ୍ଣ । ପେଟକୁ ଭୂଇଁ ଉପରେ ଘୋଷାରି ଘୋଷାରି ଚାଲିବା ଏମାନଙ୍କର ଅଭ୍ୟାସ । କୁମ୍ଭୀରମାନଙ୍କ ବ୍ୟତୀତ ସମସ୍ତ ସରୀସୃପଗୁଡ଼ିକର ହୃତ୍‌ପିଣ୍ଡରେ ତିନୋଟି କୋଠରି ଦେଖାଯାଏ । ଝିଟିପିଟି, ଏଣ୍ଡୁଅ, ଗୋଧି, କଇଁଚ, କୁମ୍ଭୀର ଓ ସାପଗୁଡ଼ିକ ଏ ବିଭାଗରେ ସ୍ଥାନ ପାଆନ୍ତି । ଏପରିକି ଲୋପପାଇଯାଇଥିବା ଡାଇନୋସର (Dinosaur) ମଧ୍ୟ ଏ ବିଭାଗର ପ୍ରାଣୀ ଅଟନ୍ତି ।




ସରୀସୃପ ଜଗତର କେତେକ ପ୍ରାଣୀ

**୪. ପକ୍ଷୀ** (Aves) – ମତ୍ସ୍ୟ, ଉଭୟଚରୀ ଓ ସରୀସୃପ ଆଦି ଶୀତଳ ରକ୍ତ ବିଶିଷ୍ଟ ପ୍ରାଣୀ ହେବାବେଳେ ପକ୍ଷୀମାନେ ହେଉଛନ୍ତି ଉଷ୍ମରକ୍ତ ବିଶିଷ୍ଟ ପ୍ରାଣୀ । ଏମାନଙ୍କର ସାମନା ଅଂଶ ଦୁଇଟି ଡେଣାକୁ ରୂପାନ୍ତରିତ ହୋଇଥାଏ । ଦେହସାରା ପରରେ ପୂର୍ଣ୍ଣ । ହାଡ଼ଗୁଡ଼ିକ ଖୁବ୍ ହାଲୁକା । ତେଣୁ ଏମାନେ ଅନାୟାସରେ ଉଡ଼ି ପାରନ୍ତି । ଏମାନଙ୍କ ହୃତ୍‌ପିଣ୍ଡର କୋଠରି ସଂଖ୍ୟା ଚାରି । ସରୀସୃପମାନଙ୍କ ପରି ଏମାନେ ଅଣ୍ଡା ଦେଇଥାଆନ୍ତି । ଏ ଶ୍ରେଣୀର ପ୍ରାଣୀମାନେ ହେଉଛନ୍ତି ପେଙ୍ଗୁଇନ୍, ଓଟପକ୍ଷୀ, ପାରା, ମାଛରଙ୍କା, କୋଇଲି, ଶୁଆ, ହଂସ, ବତକ ଓ ମୟୂର ଇତ୍ୟାଦି ।



କେତେକ ପକ୍ଷୀ

**୫. ସ୍ତନ୍ୟପାୟୀ** (Mammal) – ମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରେ ଏମାନେ ସବୁଠାରୁ ଉନ୍ନତ । ଏ ପ୍ରାଣୀମାନେ ଅନ୍ୟମାନଙ୍କ ପରି ଅଣ୍ଡା ନ ଦେଇ ଛୁଆ ଜନ୍ମ କରିଥାଆନ୍ତି । ତେବେ ପ୍ଲାଟିପସ୍ ଓ ଏକିଡ୍‌ନା ନାମକ ଦୁଇଟି ସ୍ତନ୍ୟପାୟୀ ଅଣ୍ଡା ଦେଇଥାଆନ୍ତି । ଛୁଆମାନେ ସ୍ତନ୍ୟପାୟୀ ପ୍ରାଣୀଙ୍କଠାରୁ ଜନ୍ମନେବା ପରେ କ୍ଷୀର ପାନ କରିଥାଆନ୍ତି ବୋଲି ଏମାନଙ୍କର ନାମକରଣ ଏପରି ହୋଇଛି । ଏମାନେ ମଧ୍ୟ ପକ୍ଷୀମାନଙ୍କ ପରି ଉଷ୍ଣରକ୍ତ ବିଶିଷ୍ଟ ପ୍ରାଣୀ । ଅର୍ଥାତ୍ ଶରୀରର




କେତେକ ସ୍ତନ୍ୟପାୟୀ ପ୍ରାଣୀ

ତାପମାତ୍ରା ଏମାନଙ୍କର ସବୁବେଳେ ସମାନ ଥାଏ । **ସ୍ତନ୍ୟପାୟୀଙ୍କର** ଶାରୀରିକ ବୈଶିଷ୍ଟ୍ୟଗୁଡ଼ିକ ହେଉଛି ବାହ୍ୟ କର୍ଣ୍ଣ, ଦେହର ଲୋମ ଓ ସ୍ତନ୍ୟଗ୍ରନ୍ଥି (Mammary Gland) । ଏମାନେ ଜଳ, ସ୍ଥଳ, ଆକାଶ ଓ ମାଟିତଳ ଆଦି ସ୍ଥାନମାନଙ୍କରେ ବିସ୍ତୃତ । ଗାଈ, ଜିରାଫ୍, ହାତୀ, ତିମି, ବଜ୍ରକାପ୍ତା, ଝିଙ୍କ, ମାଙ୍କଡ଼, ବାଦୁଡ଼ି, ଜଳହସ୍ତୀ ଓ ଗଣ୍ଡା ଆଦି ପ୍ରାଣୀ ସ୍ତନ୍ୟପାୟୀ ବିଭାଗର ପ୍ରାଣୀ । ଏପରିକି ସମୁଦ୍ରରେ ରହୁଥିବା ତିମି, ଡଲଫିନ୍ ଓ ସିନ୍ଧୁଘୋଟକ ତଥା ସମୁଦ୍ରଗାଈ ଆଦି ପ୍ରାଣୀ ସାମୁଦ୍ରିକ ଜଳଚର ସ୍ତନ୍ୟପାୟୀ ଭାବରେ ପରିଗଣିତ । ମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରେ ସ୍ତନ୍ୟପାୟୀଗୁଡ଼ିକ ସବୁଠାରୁ ଉନ୍ନତ ପ୍ରାଣୀ ଭାବରେ ପ୍ରତିଷ୍ଠିତ ।

ଅମେରୁଦଣ୍ଡୀ ଓ ମେରୁଦଣ୍ଡୀ ପ୍ରାଣୀମାନଙ୍କର କ୍ରମଶଃ ବିବର୍ତ୍ତନକୁ ଲକ୍ଷ୍ୟକଲେ ଦେଖାଯାଏ ଯେ ଉତ୍ପତ୍ତି ହୋଇଛି ସରଳ ପ୍ରାଣୀରୁ ଜଟିଳ ପ୍ରାଣୀକୁ ଅର୍ଥାତ୍ ଏକକୋଷୀ ଏମିବା ପ୍ରଥମେ ଉତ୍ପତ୍ତି ହେବା ସ୍ଥଳେ ଶେଷରେ ପଦାର୍ପଣ କରିଛନ୍ତି ସ୍ତନ୍ୟପାୟୀ । ସୃଷ୍ଟିର ଏହା ବଡ଼ ବିଚିତ୍ର ଘଟଣା । ଏ ସମସ୍ତ ପ୍ରାଣୀଗୁଡ଼ିକ ବିଭିନ୍ନ ସ୍ଥାନରେ ସେମାନଙ୍କର ସୁବିଧା ଅନୁସାରେ ରହି, ଖାଦ୍ୟ ଖାଇ ଓ ବଂଶ ବିସ୍ତାର କରି ଶୃଙ୍ଖଳିତ ଭାବରେ ରହିଥିବାର ଦେଖାଯାଏ । ସାମୟିକ ଅଘଟଣ ଓ ମନୁଷ୍ୟର ଅତ୍ୟାଚାର ଫଳରେ କିଛି କିଛି ପ୍ରାଣୀ ଆସ୍ତେ ଆସ୍ତେ ଲୋପ ପାଇଯାଉଛନ୍ତି । କିନ୍ତୁ ପ୍ରାକୃତିକ ପରିବେଶରେ ବିଶେଷକରି ବୃକ୍ଷରାଜି ମଧ୍ୟରେ ଚଳପ୍ରଚଳ କରୁଥିବା ଆମର ସୁନ୍ଦର ସୁନ୍ଦର ପ୍ରାଣୀଗୁଡ଼ିକୁ ଦେଖିଲେ ସତରେ ମନରେ କେତେ ଆନନ୍ଦ ଆସେ କହିହେବ ନାହିଁ । ପ୍ରାକୃତିକ ପରିବେଶ ଅତ୍ୟନ୍ତ ମନୋ-ମୁଗ୍ଧକର ଓ ତନ୍ମଧ୍ୟସ୍ଥ ପ୍ରାଣୀମାନେ ମଧ୍ୟ ଆମୋଦଦାୟକ ।



**ଲମ୍ବା ଲମ୍ବା ଆଠଟି ଗୋଡ଼ ଥିବା ପରିଚିତ ପ୍ରାଣୀ ବୁଢ଼ିଆଣୀ । ଜାଲ ତା'ର ଘର ଓ କୀଟପତଙ୍ଗ ତା'ର ଶିକାର । ଅଷ୍ଟପଦୀ ଶ୍ରେଣୀର ଆମ ପରିବେଶର ଏକ ଉପକାରୀ ବିଚିତ୍ର ପ୍ରାଣୀ ।**

# ବୁଢ଼ିଆଣୀ : କଥା, ଅକଥା ଓ ସାଧାରଣ କଥା

### ମାଙ୍କଡ଼ସା କ'ଣ ?

ନାଆଁଟି ଶୁଣିଲେ ଲାଗୁଥିବ ବୋଧହୁଏ ଏଇଟି ମାଙ୍କଡ଼ ବା ମାଙ୍କଡ଼ର କିଏ ଜାତିଭାଇ ଅଥବା ମାଙ୍କଡ଼ର କୌଣସି ଅଂଶ । କିନ୍ତୁ ଏଇଟି ତାହା ନୁହେଁ; ଗୋଟିଏ ସଂପୂର୍ଣ୍ଣ ଭିନ୍ନ ପ୍ରାଣୀ । ଅତି ଜଣାଶୁଣା । ସମସ୍ତଙ୍କ ସହ ପରିଚିତ ଏକ ଅମେରୁଦଣ୍ଡୀ ପ୍ରାଣୀ । ସାଧାରଣ ଭାବେ ସମସ୍ତେ କହିଥାଆନ୍ତି 'ବୁଢ଼ିଆଣୀ' । ଭୁଲରେ ଅନେକେ ଏହାକୁ ଗୋଟିଏ କୀଟ ବୋଲି ମନେ କରନ୍ତି । ସତରେ ଏଇଟି କୀଟ ନୁହେଁ । ଏହା ଶରୀରରେ ଆଠଟି ଗୋଡ଼ ଥିବାରୁ କୀଟ ବଦଳରେ ଏହାକୁ 'ଅଷ୍ଟପଦୀ' (Arachnida) ଶ୍ରେଣୀରେ ରଖାଯାଇଛି । ପର୍ବ (Phylum) ଏମାନଙ୍କର ସନ୍ଧିପଦ (Arthropoda) । ଏ ଜାତିର ଅନ୍ୟ ପ୍ରାଣୀଗୁଡ଼ିକ ହେଉଛନ୍ତି କଙ୍କଡ଼ାବିଛା, ଟିଙ୍କ (Mites ଓ Ticks), ଅଶ୍ୱଖୁରାକୃତି କଙ୍କଡ଼ା (King Crab) ଓ ସେହିପରି ଆଉ କେତେକ ଆଠଗୋଡ଼ିଆ ଅମେରୁଦଣ୍ଡୀ ପ୍ରାଣୀ ଘରର ବିଭିନ୍ନ ସ୍ଥାନରେ ଜାଲକରି ଅପରିଷ୍କାର କରୁଥିବାରୁ ଊଣାଅଧିକେ ଏହାକୁ ଅଧିକାଂଶ ଜାଣନ୍ତି । ଅର୍ଥାତ୍ ଘରଦ୍ୱାର ଯେଉଁଠି ମାଙ୍କଡ଼ସା ସେଇଠି ।

### ବୁଢ଼ିଆଣୀଙ୍କ ଉପରେ ଅନ୍ଧବିଶ୍ୱାସ

ଗ୍ରୀସ୍ ଦେଶର ପୁରାଣରେ ବର୍ଣ୍ଣିତ ଯେ 'ଆରାକ୍‌ନେ' ନାମରେ ଜଣେ ମହିଳା ଥିଲେ । ଥରେ ବୁଣିବା ପ୍ରତିଯୋଗିତାରେ 'ମିନର୍ଭା' ନାମକ ଜଣେ ସୁଦକ୍ଷା ବୁଣାଳୀ ଦେବୀ (Goddess of Weaving)ଙ୍କୁ ହରାଇ ଦେଲେ । ଏଥିରେ ଦେବୀଙ୍କୁ ଅପମାନ ହେବାରୁ ସେ ରାଗିଯାଇ ଅଭିଶାପ ଦେଲେ । ଅଭିଶାପଟି ଥିଲା ଯେ ଆରାକ୍‌ନେ ବୁଢ଼ିଆଣୀ ହୋଇଯାଉ ଓ ତା'ର ସୂତାସବୁ ଜାଲ ପାଲଟିଯାଉ । ଜଣାଯାଏ ଯେ ସେହି ଅଭିଶାପ ଦିନଠାରୁ ଆରାକ୍‌ନେ ବୁଢ଼ିଆଣୀ ହୋଇ ଜାଲ କରୁଛନ୍ତି । ତେବେ ଯାହାହେଉନା କାହିଁକି ଜୀବବିତ୍‌ମାନେ ଏ ପ୍ରାଣୀମାନଙ୍କୁ 'ଆରାକ୍‌ନିଡ଼ା' (Arachnida) ଶ୍ରେଣୀରେ ରଖିଛନ୍ତି ।

ବୁଢ଼ିଆଣୀର ଅନ୍ୟନାମ 'ଉର୍ଣ୍ଣନାଭ' ଯାହାର ଅର୍ଥ ହେଉଛି ନାଭିରେ ସୂତା (ଉର୍ଣ୍ଣା-ନାଭି) । ମାଙ୍କଡ଼ସା ବା ବୁଢ଼ିଆଣୀର ନାଭି ବୋଲି କୌଣସି ଅଂଶ ଶରୀରରେ ନାହିଁ । କିନ୍ତୁ ପେଟ ତଳଭାଗରେ ଜାଲଗ୍ରନ୍ଥିର ରସରୁ ସୂତା ହେଉଥିବାରୁ ଏପରି ନାମକରଣ କରାଯାଇଛି । କେତେକଙ୍କର ବିଶ୍ୱାସ ଯେ ଧଳା ବା ସବୁଜ ବର୍ଣ୍ଣର ବୁଢ଼ିଆଣୀ ଦେହରେ ପଡ଼ିଲେ ନୂଆ ପୋଷାକ ପିନ୍ଧିବାର ସମୟ ଆସେ । କଳା ବୁଢ଼ିଆଣୀ ପଡ଼ିବା ଦେହ ଖରାପର ଆଭାସ, ଆହୁରି ପୁଣି କେତେକଙ୍କ କଥାରେ ବିଭିନ୍ନ ବର୍ଣ୍ଣର ବୁଢ଼ିଆଣୀ ପଡ଼ିବା ଅନୁସାରେ ଫଳ ମିଳେ । ଧାରଣା ଏମିତି ବି ରହିଛି ଯେ ବୁଢ଼ିଆଣୀ ଦେହ ଏକ ପ୍ରେତାତ୍ମାର ରୂପାନ୍ତର । ତେଣୁ ସେମାନେ ଭାଗ ନିର୍ଣ୍ଣୟ ବା ପରିବର୍ତ୍ତନ କରିପାରନ୍ତି । ଏ କଥାଗୁଡ଼ିକ କିନ୍ତୁ ଭୁଲ୍ । ଶୀତଦିନେ ପିଲାମାନେ କହିଥାଆନ୍ତି ଯେ ସକାଳେ ପଡ଼ିଆରେ ଚିକ୍‌ଚିକ୍ ଜାଲ ଦେଖାଯାଏ ଓ ଖରାପଡ଼ିଲେ ଉଭେଇ ଯାଏ । କିନ୍ତୁ ଶୀତଦିନ ସକାଳେ ସୂର୍ଯ୍ୟୋଦୟ ପୂର୍ବରୁ ପଡ଼ିଆ କାକରରେ ପୂରି ଯାଇଥାଏ ଓ ବୁଢ଼ିଆଣୀ ଜାଲ ଉପରେ କାକର ପଡ଼ିବାରୁ ତାହା ମୁକ୍ତାପରି ଚକ୍‌ଚକ୍ କରେ । ମାତ୍ର ଖରା ପଡ଼ିଲେ କାକର ବାଷ୍ପ ହୋଇଯିବାରୁ ଜାଲ ଆଉ ଚକ୍‌ଚକ୍ ଦିଶେ ନାହିଁ । ପିଲାମାନେ ଭାବନ୍ତି ଜାଲ ଉଭେଇ ଗଲା । ଜାଲଗୁଡ଼ିକ ଜଣା ନ ପଡ଼ିବା ହେତୁ ଭୁଲରେ ପିଲାମାନେ ଏପରି କହିଥାଆନ୍ତି । ଏସବୁ

ଭୁଲକଥା ବ୍ୟତୀତ ଆଉ କେତେକଙ୍କର ବିଶ୍ୱାସ ଯେ ଏ ପ୍ରାଣୀ ଅଶୁଭ । ସତରେ ଏ ଧାରଣା ସଂପୂର୍ଣ୍ଣ ଭାବରେ ଭୁଲ । କାରଣ ଜୀବଜଗତ୍‌ରେ ଏମିତି କୌଣସି ପ୍ରାଣୀ ନାହାନ୍ତି ଯାହାକୁ ଅଶୁଭ କୁହାଯାଇପାରେ । ଜୀବଜଗତ୍‌ରେ ସବୁ ପ୍ରାଣୀର କିଛି ନା କିଛି ଭୂମିକା ରହିଛି । ପ୍ରାକୃତିକ ଭାରସାମ୍ୟ (Ecological Balance)ର ସମତା ପାଇଁ ପ୍ରତ୍ୟେକ ଦାୟୀ । ତେଣୁ ଅଶୁଭ ବିବେଚନା କରିବା ପରିବର୍ତ୍ତେ ସମସ୍ତ ପ୍ରାଣୀ ଆମପାଇଁ ଶୁଭବୋଲି ଭାବିବା ଉଚିତ ।

## ସଂସ୍କୃତ, ସାହିତ୍ୟ, ଇତିହାସ ଓ ଗୀତରେ ବୁଢ଼ିଆଣୀର ସ୍ଥାନ

ବୁଢ଼ିଆଣୀ ଜାଲ ଓ ସେମାନଙ୍କ ପ୍ରକୃତି ଅଧିକାଂଶଙ୍କୁ ବିସ୍ମୟ କରିଛି । ସେଥିପାଇଁ ସେମାନଙ୍କର ବର୍ଣ୍ଣନା ଗୀତ, ସାହିତ୍ୟ, ସଂସ୍କୃତ ଓ ଇତିହାସ ଆଦିରେ ଦେଖିବାକୁ ମିଳେ । ଗୀତରେ ଥିବା 'ବୁଢ଼ିଆଣୀ ଜାଲ ବଡ଼ ଅଡୁଆ' ପଦଟି ଅତି ଲୋକପ୍ରିୟ । ଅନେକ ସାହିତ୍ୟରେ ଜଂଜାଳମୟ ସଂସାରକୁ ବୁଢ଼ିଆଣୀ ଜାଲ ସହ ତୁଳନା କରିଛନ୍ତି । ତା' ଛଡ଼ା ବୁଢ଼ିଆଣୀ ସଂପର୍କରେ ଏକ ସୁନ୍ଦର କିମ୍ବଦନ୍ତୀ ବା ପୁରୁଣା କଥା ଶୁଣିବାକୁ ମିଳେ । ଆଉ ଏହି କଥା ଫଳରେ କେତେକ ଧର୍ମର ଲୋକମାନେ ବୁଢ଼ିଆଣୀକୁ ପୂଜା କରିଥାଆନ୍ତି ।

ଦିନକର ଘଟଣା । ମହମ୍ମଦ ଶତ୍ରୁମାନଙ୍କ ଆକ୍ରମଣରୁ ରକ୍ଷା ପାଇବାପାଇଁ ଗୋଟିଏ ଗୁମ୍ଫା ଭିତରକୁ ଯାଇ ଲୁଚିଗଲେ । ତା'ପରେ ବୁଢ଼ିଆଣୀଟିଏ ଆସି ଗୁମ୍ଫାମୁହଁକୁ ଜାଲରେ ଛନ୍ଦି ଦେଲା । ଶତ୍ରୁମାନେ ଆସି ଗୁମ୍ଫା ମୁହଁ ଜାଲ ଦେଖି ଗୁମ୍ଫା ଭିତରକୁ ଗଲେ ନାହିଁ । ସେମାନେ ମନେକଲେ ଜାଲ ଅଛି ଅର୍ଥାତ୍ ଏହା ଭିତରକୁ ମହମ୍ମଦ ଯାଇ ନ ଥିବେ । ଶତ୍ରୁମାନେ ଫେରିଗଲେ ଓ ମହମ୍ମଦ ବଞ୍ଚିଗଲେ । ଏହି ଉପାୟରେ 'ଯିଶୁ' ମଧ ପିଲାଦିନେ ରକ୍ଷା ପାଇଥିଲେ ବୋଲି ଶୁଣିବାକୁ ମିଳେ । କେ‌ବଳ ଏତିକି ନୁହେଁ ଜାପାନ ଦେଶର ଜଣେ ବୀର ବୁଢ଼ିଆଣୀ ଜାଲ ଯୋଗୁଁ ଏହିପରି ଜୀବନ ରକ୍ଷା କରିପାରିଥିବାର ଶୁଣିବାକୁ ମିଳେ । ତେଣୁ ଏସବୁ ଘଟଣାରୁ ବୁଢ଼ିଆଣୀ ଜାଲର କରାମତି କେତେ ଅନୁମାନ କରାଯାଇପାରେ । ଏପରିକି ବ୍ରୁସ ରାଜା ଓ ବୁଢ଼ିଆଣୀ ଗପ ହିଁ ସ୍କଟଲାଣ୍ଡ ଲୋକମାନଙ୍କୁ ପ୍ରଭାବିତ କରିଥିଲା ଏମାନଙ୍କୁ ଆଦୌ ନ ମାରିବାପାଇଁ ।

## ବୁଢ଼ିଆଣୀ କେତେ ପ୍ରକାରର ?

ସାରା ପୃଥିବୀରେ ତିରିଶ ହଜାରରୁ ଅଧିକ ପ୍ରକାରର ବୁଢ଼ିଆଣୀ ଦେଖାଯାଆନ୍ତି । ଏମାନଙ୍କ ମଧ୍ୟରୁ ଦୁଇପ୍ରକାର ଅର୍ଥାତ୍ 'କଳା ବିଧବା' (Black widow) ବୁଢ଼ିଆଣୀ *(Latrodectus mactans)* ଓ ଏକ ଧୂସର (Brown Recluse) ବୁଢ଼ିଆଣୀ *(Loxosceles reclusa)* ବଡ଼ ମାରାତ୍ମକ । ଏହାଛଡ଼ା ରହିବା ସ୍ଥାନ ଅନୁଯାୟୀ ଏମାନେ ବିଭିନ୍ନ ପ୍ରକାରର ଓ ନାମ ମଧ ଭିନ୍ନ ଭିନ୍ନ । ଘରେ ରହୁଥିବା ବୁଢ଼ିଆଣୀ 'ଗୃହ ବୁଢ଼ିଆଣୀ', ବଗିଚାରେ 'ବଗିଚା ବୁଢ଼ିଆଣୀ', ପଡ଼ିଆରେ 'କ୍ଷେତ ବୁଢ଼ିଆଣୀ', ଜଳରେ 'ଜଳ ବୁଢ଼ିଆଣୀ', ଓ ଅନ୍ୟ ପ୍ରାଣୀମାନଙ୍କୁ ମାରି ଦେଉଥିବା 'ବିଷାକ୍ତ ବୁଢ଼ିଆଣୀ' ଆଦି ଅନେକ ପ୍ରକାରର ପ୍ରକୃତିରେ ଦେଖାଯାଆନ୍ତି ।

ଆକାର, ବ୍ୟବହାର ଓ ପ୍ରକୃତି ଅନୁସାରେ ଏମାନଙ୍କୁ ସାଧାରଣତଃ ବିଭିନ୍ନ ଭାବରେ ନାମକରଣ କରାଯାଇଛି । ବାଘୁଆ, ଚାରିଦାନ୍ତିଆ, କୁବ୍‌ଜା, ଗଧିଆ, ପତ୍ରଡିଆଁ, ହଳଦୀମୁଣ୍ଡିଆ, କଦଳୀ, କର୍କଟ, କୁଦାମରା ଓ ଦକ୍ଷ ଶିକାରୀ ବୁଢ଼ିଆଣୀ ଆଦି ଅତି ସାଧାରଣ ।

## ବୁଢ଼ିଆଣୀଙ୍କ ରହିବା ସ୍ଥାନ

ଅଧିକାଂଶ ବୁଢ଼ିଆଣୀ ସ୍ଥଳଚର । ସ୍ଥାନ ଅନୁସାରେ ଏମାନେ ଘରେ, ବଗିଚାରେ, ଧାନକ୍ଷେତରେ ଓ ଗୁମ୍ଫା ଆଦି ସ୍ଥଳଭାଗରେ ରୁହନ୍ତି । କେତେକ ମଧ ଜଳରେ ରୁହନ୍ତି । ଏଗୁଡ଼ିକ ପୋଖରୀ

ଓ ଗହୀର ବିଲ ପାଣିରେ ରହିବାକୁ ଭଲ ପାଆନ୍ତି । ଏମାନଙ୍କ ଦେହରେ ଶୁଙ୍କଗୁଡ଼ିକ ପୂରି • ରହିଥିବାରୁ ଦେହ ପାଣିରେ ଭିଜିଯାଏ ନାହିଁ । ତା' ଛଡ଼ା ପାଣିରେ ରେଶମ ବସା ତିଆରି କରି ମଧ୍ୟ ଏମାନେ ରୁହନ୍ତି । ଧାନ, ଗହମ, କପା, ଆଖୁ, ଫଳଗଛ, ପରିବାଗଛ ଓ ସାଇତା ଖାଦ୍ୟସଶ୍ୟ ଆଦି ସବୁ ପ୍ରକାର କ୍ଷେତ ଓ ସ୍ଥାନରେ ରୁହନ୍ତି ।

ସାଧାରଣତଃ ସବୁ ବୁଢ଼ିଆଣୀ ଦିନବେଳେ ବୁଲାଚଲା କରନ୍ତି । କିନ୍ତୁ ରାତିରେ ବି କିଛି ବୁଲାଚଲା କରିବାର ଦେଖାଯାଏ । ଏମାନେ ଭୂଇଁରେ ଗାତ ଖୋଳି ରୁହନ୍ତି । ଗାତ ଭିତରେ କାନ୍ଥରେ ଜାଲ ଛନ୍ଦି ଦିଅନ୍ତି । ଗାତ ମୁହଁରେ ଜାଲର ଗୋଟିଏ କବ୍‌ଜା ତିଆରି ହୋଇଥାଏ । ଶତ୍ରୁ ଆସିଲେ ମାଙ୍କଡ଼ସା ଏହି କବ୍‌ଜାଟିକୁ ବନ୍ଦ କରିଦିଏ । ଶତ୍ରୁ ସେଠାରେ ସେମିତି ରହିଯାଏ । ବୁଢ଼ିଆଣୀ ତା'ପରେ ତାକୁ ଖାଦ୍ୟଭାବେ ବ୍ୟବହାର କରେ । କେବଳ ଏତିକି ନୁହେଁ ବୁଢ଼ିଆଣୀ ମଧ୍ୟ ରେଳଡବାଗୁଡ଼ିକରେ ମଧ୍ୟ ରହିବାର ଦେଖାଯାଏ । କ୍ଷୁଦ୍ର ଓ ନଗଣ୍ୟ ପ୍ରାଣୀ ହେଲେହେଁ ବିଭିନ୍ନ ପ୍ରକାର ବୁଢ଼ିଆଣୀଙ୍କ ଘର ଭିନ୍ନ ଭିନ୍ନ ସ୍ଥାନରେ । ଗଛ, ଗୁମ୍ଫା, ସ୍ଥଳଭାଗ ଓ ଜଳଭାଗ ଯେଉଁଠାରେ ଘର କଲେ ମଧ୍ୟ ବଡ଼ ଆଶ୍ଚର୍ଯ୍ୟର କଥା ଯେଉଁସ୍ଥାନଗୁଡ଼ିକ ସାଧାରଣତଃ ବ୍ୟବହୃତ ହୋଇ ନ ଥାଏ ଏବଂ ପତିତ ଅବସ୍ଥାରେ ରହିଥାଏ, ସେହିସ୍ଥାନଗୁଡ଼ିକ ଏମାନଙ୍କର ପ୍ରିୟ । ତା'ର କାରଣ ସେ ସ୍ଥାନକୁ କେହି ଦେଖିପାରିବେ ନାହିଁ, ଦରକାର ନ ପଡ଼ିଲେ ଯାଆନ୍ତି ନାହିଁ କି ତାଙ୍କର ଘର ଭାଙ୍ଗିଯିବାର ସମ୍ଭାବନା ମଧ୍ୟ ନ ଥାଏ । ତେଣୁ ସାମାନ୍ୟ ପ୍ରାଣୀ ପରିବେଶ ଓ ପରିସ୍ଥିତିକୁ ଅନୁଧ୍ୟାନ କରି ଘର ତିଆରି କରିଥାଏ ଏକ ନିଭୃତ୍ତ ତଥା ନିରାପଦ ସ୍ଥାନରେ । ଏମାନେ ବି ଅନ୍ୟ ପ୍ରାଣୀମାନଙ୍କ ପରି ଅନେକ କିଛି ଜାଣିପାରନ୍ତି ।



ଅଣ୍ଡା ଧରିରଥିବା ମାଈ ବୁଢ଼ିଆଣୀ ପାଖରେ ଜାଲ ଉପରେ ଉଭୟ ପୁରୁଷ ଓ ମାଈ ବୁଢ଼ିଆଣୀ ।

# ବୁଢ଼ିଆଣୀ : ଦେଖିବାକୁ କେମିତି ?

ଗୋଟିଏ ପ୍ରାଣୀ ବିଷୟରେ ବିଶେଷ କିଛି ଜାଣିବା ପୂର୍ବରୁ ତା'ର ଆକାର ବା ଶରୀର ଗଠନ ବିଷୟରେ ପ୍ରଥମରୁ ଜାଣିବା ନିହାତି ଦରକାର । ଶରୀର ଗଠନରୁ ତା'ର ବ୍ୟବହାର ଓ କାର୍ଯ୍ୟକଳାପ, ଶିକାର ଏବଂ ଆତ୍ମରକ୍ଷା ଆଦି ସମ୍ବନ୍ଧରେ ଜାଣିବା ସହଜ ହୁଏ । ବୁଢ଼ିଆଣୀଗୁଡ଼ିକ ଛୋଟ ହେଲେ ବି ଅନ୍ୟସବୁ ପ୍ରାଣୀଙ୍କ ପରି ଏହାର ଦୁଇଟି ଅଂଶ ଦେଖାଯାଏ ଶରୀରରେ ! ଛୋଟିଆ ମୁଣ୍ଡଟିଏ ଓ ଦେହ ତୁଳନାରେ ବେଶ୍ ବଡ଼ ପେଟଟିଏ । ଏବେ ଦେଖିବା ଏ ମୁଣ୍ଡ ଓ ବଲ୍‌ପରି ପେଟରେ ସବୁ ଆଉ କି କି ଅଂଶ ରହିଥାଏ ଏବଂ ସେମାନଙ୍କର କାର୍ଯ୍ୟସବୁ କଅଣ ।

**ବୁଢ଼ିଆଣୀର ଶରୀର ଗଠନ**

ବୁଢ଼ିଆଣୀମାନଙ୍କର ଶରୀର ଦୁଇ ଭାଗରେ ବିଭକ୍ତ – ଶିରୋବକ୍ଷ ଓ ଉଦର । ଶରୀରର ଏ ଦୁଇଟି ଅଂଶ ଏକ ଅଣଓସାରିଆ 'ଅଣ୍ଟା' (Pedicel) ଦ୍ୱାରା ଲାଗି ରହିଥାଏ । ଶିରୋବକ୍ଷ ଅଗ୍ରଭାଗରେ ବା ମୁଣ୍ଡ ଉପରେ ଦୁଇପଟେ ସଜା ହୋଇଥାଏ ଆଠଟି ଗୋଲ ଗୋଲ ଆଖି । ମୁହଁର ଠିକ୍ ଦୁଇ ପାଖରେ ଛୋଟ ଗୋଡ଼ ପରି ଏକ ଯୋଡ଼ା ଉପାଙ୍ଗ (Chelicerae) । ଏହାକୁ ଦାନ୍ତ କୁହାଯାଇପାରେ । ଦେଖିବାକୁ ଠିକ୍ ଅଧା ଖୋଲା ପେନ୍‌ସିଲ୍ କଟା ଛୁରୀ ପରି । ଏହା ଭିତରେ ରହିଥାଏ ବିଷଗ୍ରନ୍ଥି (Poison Glands) । ବୁଢ଼ିଆଣୀ ତା'ର ଶିକାର ଦେହରେ ଏହି ଦାନ୍ତ ଗଳାଇ ବିଷଥଳିରୁ ବିଷ ଢାଳିଦିଏ । ଏହି ବିଷ ପ୍ରଭାବରେ ଛୋଟ ଶିକାରଗୁଡ଼ିକ କେତେ ସେକେଣ୍ଡ ବା ମିନିଟ୍ ମଧ୍ୟରେ ମରିଯାଏ । ତା'ପରେ ବୁଢ଼ିଆଣୀ ତା' ଦେହର ରସକୁ ଶୋଷି ଖାଇଯାଏ । ଦେଖାଯାଇଛି ଯେ ଅଧିକାଂଶ ବୁଢ଼ିଆଣୀ ବିଷାକ୍ତ; ମାତ୍ର ତାହା ଜଣାପଡ଼େ ନାହିଁ କାରଣ ମଣିଷପାଇଁ ଖୁବ୍ ଅଳ୍ପ ବୁଢ଼ିଆଣୀ ମାରାତ୍ମକ ।

ମୁଣ୍ଡ ପାଖରେ ଦାନ୍ତପରି ବିଷାକ୍ତ ଅଂଶ ପରେ ଦୁଇପାର୍ଶ୍ୱକୁ ଗୋଟିଏ କରି ଆକାର (Pedipalp) ରହିଥାଏ । ଦେଖିବାକୁ ମଧ୍ୟ ଗୋଡ଼ପରି; ମାତ୍ର ଦାନ୍ତପରି ଆକାର ଠାରୁ ସାମାନ୍ୟ ବଡ଼ ଓ ଗୋଡ଼ ଆକାର ଠାରୁ ଛୋଟ । ପୁରୁଷ କ୍ଷେତ୍ରରେ ଏ ଆକାରଟି ମିଳନ ପାଇଁ ସାହାଯ୍ୟ କରେ (Copulatory Organ) । ବକ୍ଷ ତଳ ଦୁଇ କଡ଼କୁ ଚାରିଯୋଡ଼ା ଗୋଡ଼ ଲାଗି ରହିଥାଏ । ସବୁ ବୁଢ଼ିଆଣୀର ଗୋଡ଼ର ଲମ୍ବ ସମାନ ହୋଇ ନ ଥାଏ । କାହାର ଲମ୍ବା ତ କାହାର ଛୋଟ । ପ୍ରତ୍ୟେକ ଗୋଡ଼ ସାତଟି ଛୋଟ ଛୋଟ ଖଣ୍ଡରେ ତିଆରି । ଆଉ ମୁନିଆ ମୁନିଆ ନଖ ରହିଥାଏ ପ୍ରତ୍ୟେକ ଗୋଡ଼ ଶେଷ ଭାଗରେ । ସେଥିପାଇଁ ଅତି ସହଜରେ ଏମାନେ କାନ୍ଥରେ, ଗାତରେ, ଭୂଇଁ ଉପରେ ଓ ସମତଳ ସ୍ଥାନ ଆଦି ଉପରେ ସହଜରେ ଚାଲବୁଲ କରିପାରନ୍ତି । ଉଦରଟି ସାଧାରଣତଃ ଗୋଲାକାର । ମଳଦ୍ୱାର ଉଦରର ଉପର ଭାଗରେ ଥାଏ । ଉଦରର ତଳପଟେ ରହିଥାଏ ଜାଲଗ୍ରନ୍ଥି (Spinneret) । ଏ ଜାଲଗ୍ରନ୍ଥିର ସଂଖ୍ୟା ଚାରିଯୋଡ଼ା ବା ତିନିଯୋଡ଼ା ।

ପୁରୁଷ ବୁଢ଼ିଆଣୀ ସ୍ତ୍ରୀ ବୁଢ଼ିଆଣୀଠାରୁ ଦେଖିବାକୁ ଅଧିକ ସୁନ୍ଦର ଓ ବିଭିନ୍ନ ରଙ୍ଗର । କିନ୍ତୁ ଆକାରରେ ସ୍ତ୍ରୀ ବୁଢ଼ିଆଣୀ ପୁରୁଷଠାରୁ ବହୁତ ବଡ଼ । ସ୍ତ୍ରୀ ବୁଢ଼ିଆଣୀ ବଡ଼ ରାଗୀ । ରାଗିଗଲେ ପୁରୁଷଟିକୁ ମାରିଦେଇ ତା'ର ରସ ମଧ୍ୟ ଶୋଷି ଖାଇଯାଏ । ବୁଢ଼ିଆଣୀର ଦେହସାରା ଛୋଟ ଛୋଟ ଶୁଙ୍ଗରେ ପୂର୍ଣ୍ଣ ଥାଏ । ଛୋଟ ବୁଢ଼ିଆଣୀ କ୍ରମେ ବଡ଼ ହେଲେ ପୁରୁଣା ଖୋଳଟି ଫାଟିଯାଇ ତା' ଭିତରୁ ବୁଢ଼ିଆଣୀ ବାହାରି ଥାଏ । ଅନ୍ୟ କେତେକ କୀଟ ପରି ଏହା ଦେହରୁ ମଧ୍ୟ ଖୋଳ ଛାଡ଼ିଥାଏ (Moulting) ।




ବୁଢ଼ିଆଣୀର ଶରୀର ଓ ଅଙ୍ଗପ୍ରତ୍ୟଙ୍ଗ



ବୁଢ଼ିଆଣୀର ପେଟପାଖର ଆକୃତି



ବୁଢ଼ିଆଣୀର ପିଠିପାଖର ଆକୃତି



ବୁଢ଼ିଆଣୀର ସାମନା ପାଖର ଆକୃତି

[ଆଦ୍ୟ ସଂଦଶକ ଦୁଇଟି ପରସ୍ପରକୁ
ମୁହଁ କରି ରହିଛି (ତୀର ଚିହ୍ନିତ ଅଂଶ) ]



ତୀରଚିହ୍ନିତ ଅଂଶ ପାଖରେ ଥିବା ଆଦ୍ୟ ସଂଦଶକ ଦୁଇଟି ତଳକୁ ମୁହଁକରି ରହିଛି

ବୁଢ଼ିଆଣୀମାନଙ୍କ ଶରୀରର ବିଭିନ୍ନ ଅଂଶ



ବୁଢ଼ିଆଣୀର ବୟନାଙ୍ଗ



ବୁଢ଼ିଆଣୀ ବିଷଦାନ୍ତର ଗଠନ

## ବୁଢ଼ିଆଣୀର ଜୀବନଚକ୍ର

ବୁଢ଼ିଆଣୀର ଜୀବନଚକ୍ର (Life Cycle) ଅତି ଚମତ୍କାର । ଯୌନ ମିଳନ (Mating) ପୂର୍ବରୁ ପ୍ରାୟ ମିଳନ ନୃତ୍ୟ ହୋଇଥାଏ । କିଛି ସମୟ ନାଚିବା ଓ ଅଙ୍ଗପ୍ରତ୍ୟଙ୍ଗ ଦେଖାଇବା ପରେ ମିଳନ ହୁଏ । ଏହା ବହୁତ ସମୟ ଧରି ହୋଇଥାଏ । ବହୁତ ସମୟର ମିଳନ ପରେ ସ୍ତ୍ରୀ ପୁରୁଷକୁ ଖାଇଯାଏ । ଏପରି ପ୍ରକ୍ରିୟା ମଧ୍ୟ କଙ୍କଡ଼ାବିଛାଠାରେ ଦେଖାଯାଏ । ତା' ପରେ ସ୍ତ୍ରୀ ବୁଢ଼ିଆଣୀ କୀଟମାନଙ୍କ ପରି ଅନେକ ଅଣ୍ଡା ଦିଏ । ଅଣ୍ଡାଗୁଡ଼ିକୁ ସେ ଗୋଟିଏ ରେଶମ ଥଳୀରେ କୌଣସି ନିରାପଦ ସ୍ଥାନରେ ଲୁଚାଇ ରଖେ କିମ୍ବା ତା' ଜାଲ ମଝିରେ ଝୁଲାଇ ଦିଏ । କୌଣସି କୌଣସି ମାଆ ଅଣ୍ଡାଗୁଡ଼ିକୁ ପେଣ୍ଡୁପରି କରି ଛାତିରେ ଧରି ବୁଲନ୍ତି । ଅଣ୍ଡାଫୁଟି ସିଧାସଳଖ ଛୁଆ ବାହାରନ୍ତି । ଛୁଆଗୁଡ଼ିକ ଛୋଟ ହେଲେବି ପୂର୍ଣ୍ଣାଙ୍ଗ ବୁଢ଼ିଆଣୀ । ମାଆ ଓ ଛୁଆ ବୁଢ଼ିଆଣୀ ମଧ୍ୟରେ କିଛି ତଫାତ୍ ନ ଥାଏ; ମାତ୍ର ଆକାରରେ ଛୋଟ । ଛୁଆଗୁଡ଼ିକ କିଛିଦିନ ପରେ ଖୋଳ ବଦଳାଇ ବଡ଼ ହୁଅନ୍ତି । ମାଆ ବୁଢ଼ିଆଣୀ ଅଧିକାଂଶ କ୍ଷେତ୍ରରେ ଛୁଆମାନଙ୍କର ଯତ୍ନ ନିଏ ନାହିଁ । କିନ୍ତୁ କେତେକ କ୍ଷେତ୍ରରେ ମାଆ ଛୁଆମାନଙ୍କୁ ଖାଇବାକୁ ଆଣିଦେବା ଦେଖାଯାଏ । ଛୁଆଗୁଡ଼ିକ ଫୁଟିବା ପରେ ପରେ ମାଆ ପରି ଶିକାର କରନ୍ତି । ଏଣେତେଣେ ବୁଲିପାରନ୍ତି ଓ ଜାଲମଧ୍ୟ ବୁଣି ପାରନ୍ତି । କୀଟମାନଙ୍କ ପରି ଏମାନଙ୍କ ଜୀବନଚକ୍ରରେ ଲାର୍ଭା (Larva) ଓ ପ୍ୟୁପା (Pupa) ଇତ୍ୟାଦି ଅବସ୍ଥା ଦେଖାଯାଇ ନ ଥାଏ । ଜୀବନଚକ୍ର ସିଧାସଳଖ ହେତୁ ଛୁଆ ଅବସ୍ଥାରେ ମରିଯିବାର ସମ୍ଭାବନା ଖୁବ୍ କମ୍ ଥାଏ । ତେଣୁ ଘରେ ସାଧାରଣତଃ ଯେଉଁ ବୁଢ଼ିଆଣୀ ଦେଖାଯାଆନ୍ତି, ସେଗୁଡ଼ିକୁ ଯେତେ ମାରିଲେ ମଧ୍ୟ ପୁଣି କିଛିଦିନ ପରେ ବୁଢ଼ିଆଣୀ ଓ ସେମାନଙ୍କର ଜାଲରେ ଘର ଛାତ ଓ କୋଣ ତଥା କମ୍ ଚଳପ୍ରଚଳ ସ୍ଥାନଗୁଡ଼ିକ ପୂରି ଯାଏ । ଅଣ୍ଡା ଏତେ ସଂଖ୍ୟାରେ ଏମାନେ ଦିଅନ୍ତି ଯେ ଏମାନଙ୍କ ବଂଶ ନିପାତ ହେବା ବହୁତ କଷ୍ଟ ।

# ବୁଢ଼ିଆଣୀର ବ୍ୟବହାର, ଶତ୍ରୁତା ଓ ଉପକାରିତା

## ବୁଢ଼ିଆଣୀର ବ୍ୟବହାର

ବଞ୍ଚିବାପାଇଁ ଖାଦ୍ୟ ତ' ନିହାତି ଦରକାର । ସେଥିରୁ ବୁଢ଼ିଆଣୀ ବା ବାଦ ଯିବ କିପରି ? ବୁଢ଼ିଆଣୀ ଗୋଟିଏ ଭକ୍ଷକ (Predator) ଜୀବ । ଛୋଟ ଛୋଟ କୀଟପତଙ୍ଗ ଏମାନଙ୍କର ଖାଦ୍ୟ । ମିଲିବରା, ଛୋଟ ଛୋଟ ବିଛା, କୀଟପତଙ୍ଗଗୁଡ଼ିକର ଲାର୍ଭା, କାଠ ଉକୁଣି, ମାଛି ଓ ମଶା ଆଦି ଏମାନଙ୍କର ମୁଖ୍ୟ ଖାଦ୍ୟ । ଆଫ୍ରିକାର ଏକ ଜାତିର ମାଙ୍କଡ଼ସା ମୂଷା ଓ ଆମେରିକାର ମାଇଗେଲ ନାମକ ବୁଢ଼ିଆଣୀ ଛୋଟ ପକ୍ଷୀମାନଙ୍କୁ ମାରି ଖାଇବାର ଜଣାଯାଏ । ଜଳଚର ବୁଢ଼ିଆଣୀମାନେ ମାଛ ଓ ଜଳକୀଟମାନଙ୍କୁ ଖାଇବାକୁ ଭଲ ପାଆନ୍ତି । ଜୀବନ୍ତ କୀଟ ଆଦି ମୁଖ୍ୟତଃ ଖାଦ୍ୟ ହେଲେ ମଧ୍ୟ ଆମେରିକାର ଏକ ବୁଢ଼ିଆଣୀ *(Herpyllus)* ର କେବଳ ମଲା କୀଟପତଙ୍ଗ ହିଁ ପ୍ରିୟ । ଏସବୁ ବ୍ୟତୀତ ପରସ୍ପରକୁ ଖାଇବା (Cannibalism) ବୁଢ଼ିଆଣୀମାନଙ୍କ ଠାରେ ପ୍ରାୟ ଦେଖାଯାଏ । ଆଉ କେତେକ ଜାତିର ବୁଢ଼ିଆଣୀ ଠାରେ ପୁରୁଷ ବୁଢ଼ିଆଣୀ ଜାଣିଶୁଣି ଜାଲ ଖାଇଥା'ନ୍ତି ।

ବୁଢ଼ିଆଣୀ ଏକ ସୁଦକ୍ଷ ବିନ୍ଧାଣି । ତା'ର ଜାଲ ଖୁବ୍ ମଜଭୁତ୍ ଓ ସରୁ । ବିଭିନ୍ନ ବୁଢ଼ିଆଣୀ ବିଭିନ୍ନ ପ୍ରକାର ଜାଲ ତିଆରି କରିପାରନ୍ତି । ଗୋଲାକାର ଜାଲ, ମାଛଧରା ଜାଲ, ସ୍କି ଜାଲ, ସୂତାଖିଅ ଜାଲ ଓ ଡଙ୍ଗାଜାଲ ଆଦି ଅତି ସାଧାରଣ । ବିଶେଷତଃ ପଡ୍ରଡିଆଁ (Jumping Spider) ଓ ଗଧିଆ (Wolf Spider) ଜାତିର ବୁଢ଼ିଆଣୀ ଜାଲ ତିଆରି କରନ୍ତି ନାହିଁ । ଏମାନେ ଶିକାର ପାଇବାମାତ୍ରେ ଖପ୍ କରି ମାଡ଼ିବସନ୍ତି । ଆଉ ଅନ୍ୟ ଜାତିର ବୁଢ଼ିଆଣୀଗୁଡ଼ିକ ଜାଲରେ ଥାଇ ଶିକାର ଜାଲରେ ଛନ୍ଦି ହୋଇଗଲେ କାବୁକରି ଖାଇଥା'ନ୍ତି । କଙ୍କଡ଼ା ବୁଢ଼ିଆଣୀ (Crab Spider) ଗୁଡ଼ିକ ସାଧାରଣତଃ ଫୁଲ ମଧ୍ୟରେ ପଶିଯାଇ ଶିକାରକୁ ଅପେକ୍ଷା କରିଥାଆନ୍ତି । ପରାଗରେଣୁ ପାଇଁ କୀଟ ଫୁଲକୁ ଯିବାମାତ୍ରେ ଏ ଶିକାର କରି ଖାଏ । ଯେଉଁମାନେ ବସା ତିଆରି କରିପାରନ୍ତି ନାହିଁ ସେମାନେ ଅନ୍ୟ ବୁଢ଼ିଆଣୀ ସହ ମିଶି ତାଙ୍କର ଛଡ଼ା ଖାଦ୍ୟକୁ ଖାଆନ୍ତି । ଦକ୍ଷିଣ ଆମେରିକାର କେତେକ ରାକ୍ଷସ ବୁଢ଼ିଆଣୀ ହ୍ୟୁମିଙ୍ଗ୍ ଚଢ଼େଇ ପରି ଛୋଟ ଛୋଟ ଚଢ଼େଇକୁ ଲୁଚି ଛପି ଶିକାର କରନ୍ତି । ଏପରି ପରଭୋଜୀ ବୁଢ଼ିଆଣୀଗୁଡ଼ିକର ପୋଷକ ବସାରୁ ଖାଦ୍ୟ ଚୋରିକରି ଖାଇବା ଅଭ୍ୟାସ ।

ବୁଢ଼ିଆଣୀ ବାସ୍ତବିକ୍ ଗୋଟିଏ ଦକ୍ଷପୂର୍ଣ୍ଣ ଶିକାରୀ । ଶିକାରଗୁଡ଼ିକୁ ଜାଲରେ ଛନ୍ଦିବା ପରେ ନିଜ ଦେହରୁ ବିଷକୁ ଶିକାର ଦେହକୁ ଛାଡ଼େ । ତେଣୁ ଶିକାର ଦରମଲା ଅବସ୍ଥାକୁ ଚାଲିଆସେ; କିନ୍ତୁ ଜୀବିତ ଥାଏ । ଏହି ସମୟରେ ବୁଢ଼ିଆଣୀ ତାକୁ ଆରାମରେ ଖାଇଥାଏ । ଜୀବଟି ଅନେକ ସମୟରେ ଛଟପଟ ହେଉଥିବାର ଦେଖାଯାଏ । ଆଉ କେତେକ ସ୍ଥଳରେ ଶିକାରଟି ଜାଲରେ ପଡ଼ିବା ମାତ୍ରେ ବୁଢ଼ିଆଣୀ ତା' ଦେହରୁ ସୂତା କାଢ଼ି ଶିକାର ଚାରିପଟେ ଗୁଡ଼ାଇ ପକାଏ ଓ ତା' ଉପରେ ପାଚକ ରସ ଢାଳି ଦିଏ । ତା'ପରେ ବୁଢ଼ିଆଣୀ ତାହାକୁ ଖାଇବାକୁ ଆରମ୍ଭ କରେ । ବେଳେବେଳେ ବୁଢ଼ିଆଣୀ ଶିକାରକୁ ମାଡ଼ିବସି ଗୋଡ଼ଦ୍ୱାରା ଫୁଟାଇ ଖଣ୍ଡିଆଖାବରା କରିପକାଏ । ଶିକାରଟି ଅବଶ ହୋଇଯିବା ପରେ ଖାଇଥାଏ । ଆଉ କେତେକ ମାଟିରେ ଗାତକରି ରହି ଗାତ ମୁହଁକୁ ଜାଲରେ ବନ୍ଦ କରି ଦେଇଥାଆନ୍ତି । କୀଟପତଙ୍ଗ ଏହି ଜାଲରେ ପଡ଼ିଲେ ବୁଢ଼ିଆଣୀ ଗାତ ଭିତରକୁ ନେଇ ତାକୁ ଖାଇଥାଏ । ଆମେରିକାର ଟାରାଣ୍ଟୁଲା (Tarantula) ନାମକ ବୁଢ଼ିଆଣୀ ଏପରି ଗାତ କରି ଗାତ ମୁହଁକୁ ଏକ ଘୋଡ଼ଣୀ ପରି ଆକାର ତିଆରି କରି ବନ୍ଦ କରିଥାଏ । ଘୋଡ଼ଣୀଟି ସୂତା ଓ ମାଟିରେ ତିଆରି । ବୁଢ଼ିଆଣୀ ଗାତ ଭିତରେ ଥିବାବେଳେ ଏହି

ଘୋଡ଼ଣୀଟି ଅଧା ଖୋଲା ଥାଏ । ଶିକାରଟି ଗାତ ଭିତରକୁ ପଶିଗଲେ ଘୋଡ଼ଣୀଟି ଆପେ ଆପେ ବନ୍ଦ ହୋଇଯାଏ । ତା'ପରେ ଶିକାରକୁ ଟାରାଣ୍ଟୁଲା ଆରାମରେ ଖାଏ ।

ବୁଢ଼ିଆଣୀ ଜଗତ୍‌ରେ କେତେକ ବିଷାକ୍ତ ବୁଢ଼ିଆଣୀ ମଧ୍ୟ ଦେଖାଯାଏ । ଅଷ୍ଟ୍ରେଲିଆର ଆଟ୍ରାକ୍‌ସ *(Attrax)* ନାମକ କାହାଳୀ ବସା ବୁଢ଼ିଆଣୀ (Funnelweb Spider) ଅତ୍ୟନ୍ତ ବିଷାକ୍ତ । ସାପ ଫଣାଟେକି ମାରିବା ପରି ଏମାନେ ଆକ୍ରମଣ କରନ୍ତି ମେରୁଦଣ୍ଡୀ ପ୍ରାଣୀମାନଙ୍କୁ । ତା' ଛଡ଼ା କାନାଡ଼ା, ହାୱାଇ ଦ୍ୱୀପ ଓ ଆମେରିକାର କଳା-ବିଧବା (Black-widow) ଓ ଜୋତା ବୋତାମ (Shoe-button) ଜାତିର ବୁଢ଼ିଆଣୀ ମନୁଷ୍ୟପାଇଁ ବି ମାରାତ୍ମକ ବୋଲି ଜଣାଯାଇଛି ।

### ବୁଢ଼ିଆଣୀର ଶତ୍ରୁ ଓ ଆତ୍ମରକ୍ଷା

ବୁଢ଼ିଆଣୀ ଯେପରି ଅନେକ କୀଟପତଙ୍ଗ ଓ ପ୍ରାଣୀମାନଙ୍କର ଶତ୍ରୁ, ସେହିପରି ତା'ର ବି ଅନେକ ଶତ୍ରୁ ଅଛନ୍ତି । ପକ୍ଷୀ ଓ ଏଣ୍ଡୁଅ ପ୍ରଭୃତି ଏମାନଙ୍କୁ ଖାଇଯାଆନ୍ତି । ଏମାନଙ୍କ ହାବୁଡ଼ରୁ ବଞ୍ଚିବାପାଇଁ ବୁଢ଼ିଆଣୀ ଅନେକ ଉପାୟ ଅବଲମ୍ବନ କରେ । କେତେବେଳେ ଆଢୁଆଳରେ ଲୁଚିଯାଆନ୍ତି ତ କେତେବେଳେ ଗାତ ବା ଫାଟ ମଧ୍ୟରେ ଛପିଯାଆନ୍ତି । ଅନେକେ ସେମାନଙ୍କ ବର୍ଣ୍ଣ ଯୋଗୁଁ ରକ୍ଷା ପାଇଯାଆନ୍ତି । କେତେକ ଗଛ ଛାଲିପରି, କେତେକ ଫୁଲ ରଙ୍ଗପରି, କେତେକ ପତ୍ରପରି ଓ କେତେକ ଘର ରଙ୍ଗ ପରି ହୋଇଥିବାରୁ ଶତ୍ରୁ ଏମାନଙ୍କୁ ହଠାତ୍ ଜାଣିପାରେ ନାହିଁ । ଆଉ ଏକ ଜାତିର ବୁଢ଼ିଆଣୀ ଅଦ୍ଭୁତ ଭାବରେ ନିଜକୁ ବଞ୍ଚାନ୍ତି । ଶତ୍ରୁ ଆସି ପହଞ୍ଚିଗଲେ ଏମାନେ ଶତ୍ରୁଆଡ଼କୁ ଗୋଡ଼ଟିଏ ବଢ଼ାଇ ଦିଅନ୍ତି । ଶତ୍ରୁର ନଜର ଏ ଗୋଡ଼ ଉପରେ ପଡ଼ିବା ବେଳକୁ ବୁଢ଼ିଆଣୀ ତା'ର ଗୋଡ଼ଟିକୁ ଭାଙ୍ଗିଦେଇ ଦୌଡ଼ି ଚାଲିଯାଏ । ଗୋଡ଼ଟି କିନ୍ତୁ ଛଟପଟ ହେଉଥିବାର ଦେଖାଯାଏ । ଠିକ୍ ଝିଟିପିଟି ଲାଞ୍ଜ ଛିଣ୍ଡିଯିବା ପରି । ତେଣୁ ଶତ୍ରୁ ସହଜରେ ବୁଢ଼ିଆଣୀକୁ ଆକ୍ରମଣ କରିପାରେ ନାହିଁ । କିଛି ଦିନ ପରେ ତାର ଭଙ୍ଗାଗୋଡ଼ ଜାଗାରେ ପୁଣି ନୂଆଗୋଡ଼ ବାହାରିପଡ଼େ ।

### ବୁଢ଼ିଆଣୀର ଉପକାରିତା

ବୁଢ଼ିଆଣୀ ଏକ ଧୂର୍ତ୍ତ, ନଗଣ୍ୟ ଓ ଅସନା ପ୍ରାଣୀ ହେଲେ ମଧ୍ୟ ଅନେକ ଉପକାର ଆମର କରିଥାଆନ୍ତି । ଅନିଷ୍ଟକାରୀ ଜୀବମାନଙ୍କୁ ଖାଇଯାଉଥିବାରୁ ଏମାନେ ମଣିଷ ସମାଜର ଉପକାରୀ ବନ୍ଧୁ । ବିଶେଷକରି ଶସ୍ୟକ୍ଷେତ୍ରରେ ଅନିଷ୍ଟକାରୀ କୀଟମାନଙ୍କୁ ଦମନ କରିବାରେ ଏମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରକୃତିର ଭାରସାମ୍ୟ ରକ୍ଷାକାରୀ ପ୍ରାଣୀ ଭାବରେ ଏହାର ସ୍ଥାନ କମ୍ ନୁହେଁ । ଏହାର ବିଷ ଅପସ୍ମାର ରୋଗର ଚିକିତ୍ସାରେ ବ୍ୟବହାର କରିବା ପାଇଁ ଗବେଷଣା ଚାଲିଛି । ଏକପ୍ରକାର ବୁଢ଼ିଆଣୀ ସୂତାରୁ କୃତ୍ରିମ ହୃତ୍‌ପିଣ୍ଡ ଭାଲ୍‌ଭ (Artificial Heart Valve), କୃତ୍ରିମ ଶିରାପ୍ରଶିରା ଓ ଅନ୍ୟାନ୍ୟ ସୂକ୍ଷ୍ମ ଶଲ୍ୟ ଉପକରଣ (Surgical Instrument) ସୃଷ୍ଟି ପାଇଁ ଗବେଷଣା ଚାଲୁ ରହିଛି । ଆମେରିକାର ଦେଶରକ୍ଷା ବିଭାଗ ଏଥିରୁ ଗୁଳି ନିରୋଧକ ପଦାର୍ଥ ପ୍ରସ୍ତୁତିପାଇଁ ଚେଷ୍ଟା ଏବେବି ଚଳାଇଛନ୍ତି । ସର୍ବୋପରି ଚାଷକ୍ଷେତ୍ରରେ ଏହାର ଚାହିଦା ଅନେକ ଥିବାରୁ ଜୈବ ନିୟନ୍ତ୍ରକ (Bio-controller) ଭାବରେ ଏହାର ବ୍ୟବହାର ନିତାନ୍ତ ଆବଶ୍ୟକ ।

ଛୋଟିଆ ଜୀବଟି ହେଲେ ବି କରାମତି ତାହାର କମ୍ ନୁହେଁ । ନଗଣ୍ୟ ଭାବି ଏମାନଙ୍କୁ ପରିବେଶରୁ ଆମେ ନିପାତ କରିଦେବା ଭୁଲ । ପରିବେଶର ଏକ ଉପକାରୀ ପ୍ରାଣୀ ଭାବି ଏମାନଙ୍କ ବଂଶରକ୍ଷା ପ୍ରତି ଆମେ ସମସ୍ତେ ଧ୍ୟାନଦେବା ବିଧେୟ । କେତେକ ବୁଢ଼ିଆଣୀ ଓ କେତେକ ମାଙ୍କଡ଼ସା କହିଲେ ମଧ୍ୟ ଏ ପ୍ରାଣୀଟିର କାରବାର ମାଙ୍କଡ଼ପରି ନୁହେଁ । ସତରେ ଟିକିଏ ଚିନ୍ତା କରାଯାଉ ! ଏ କ'ଣ ଆମ କାମରେ ଆସୁ ନାହିଁ !! ଆମେ ଏହାକୁ ବଞ୍ଚାଇ ରଖିବା କ'ଣ ଆମର ଠିକ୍ ନୁହେଁ !!!

# ବୁଢ଼ିଆଣୀର ଶିକାର ଓ ଖାଦ୍ୟ

ଲଢ଼େଇ କିଏ ବା ନ କରେ ! ବଞ୍ଚିବାପାଇଁ ଖାଦ୍ୟ ଯେମିତି ହେଲେ ଆବଶ୍ୟକ । ଖାଦ୍ୟ ଟିକିଏ ପାଇବାପାଇଁ ପ୍ରତ୍ୟେକ ପ୍ରାଣୀ କିଛି ନା କିଛି ବୁଦ୍ଧି ଖଟାଇ ଥାଆନ୍ତି; ଚୋରି କରିଥାଆନ୍ତି, ଆକ୍ରମଣ କରିଥାଆନ୍ତି, ଲଢ଼େଇ କରିଥାଆନ୍ତି, କାମୁଡ଼ି ପକାଇଥାଆନ୍ତି, ଲାହୁଡ଼ ମାରିଥାଆନ୍ତି, ଦୁର୍ଗନ୍ଧ ରସ ଢାଳିଥାଆନ୍ତି, ଫଣା ମାରିଥାଆନ୍ତି, ଡରାଇ ଥାଆନ୍ତି, କାବୁ କରି ପକାନ୍ତି ଅଥବା ଝାମ୍ପ ମାରିଥାଆନ୍ତି । ଏମିତିକି ମଣିଷ ପରି ପ୍ରାଣୀ ହାଣିକାଟି ବି ଶିକାର କରି ଖାଇବା ମଧ ଅତି ସାଧାରଣ କଥା । ଏ ସବୁ କଥା କେବଳ ଟିକିଏ ଆଧାର ପାଇଁ । ଏହା ପୂର୍ବରୁ ମାଙ୍କଡ଼ସା ବା ବୁଢ଼ିଆଣୀ ବିଷୟରେ କୁହାଯାଇଛି । ଏବେ ଦେଖିବା ବୁଢ଼ିଆଣୀ କ'ଣ, କିପରି ଓ କେତେବେଳେ ଖାଉଛି ? ଏତେ ଛୋଟିଆ ପ୍ରାଣୀଟି ହେଲେ ବି ତା'ର ଖାଦ୍ୟସଂଗ୍ରହ କରାମତି ବଡ଼ ଜଟିଳ । ସେଥିପାଇଁ ସେ କେତେ ପରିଶ୍ରମ ଓ ବୁଦ୍ଧି ଖର୍ଚ୍ଚ କରେ ତାହା ବଡ଼ ଆଶ୍ଚର୍ଯ୍ୟର କଥା ।

## ବୁଢ଼ିଆଣୀର ସାଧାରଣ ଖାଦ୍ୟ

ବୁଢ଼ିଆଣୀ ସାଧାରଣତଃ ଅନ୍ୟ ପ୍ରାଣୀମାନଙ୍କୁ ଖାଇ ବଞ୍ଚେ । ସେଥିପାଇଁ ତାହା ଗୋଟିଏ **ଭକ୍ଷଣକାରୀ** (Predator) ପ୍ରାଣୀ ଭାବରେ ଜଣାଶୁଣା । ପରିବେଶରେ ଦେଖାଯାଉଥିବା ସାନ ସାନ ପୋକ ଓ ପତଙ୍ଗ ଆଦି ଏମାନଙ୍କର ମୁଖ୍ୟ ଖାଦ୍ୟ । ଛୋଟ ଛୋଟ ବିଛା, କାଠ ଉକୁଣି (Wood-lice), ମିଲିବଗ୍, କୀଟ ଓ ପତଙ୍ଗମାନଙ୍କର ଲାର୍ଭା ଏମାନେ ଖାଇଥାଆନ୍ତି । କିନ୍ତୁ ଭୋକିଲା ଥିବାବେଳେ ଯେ କୌଣସି ଟିକି ଜୀବଜନ୍ତୁ ପାଇଲେ ଖାଆନ୍ତି । କିନ୍ତୁ ଏ ଜୀବମାନଙ୍କୁ ଏମାନେ ପୂରାପୂରି ପାଟିରେ ପୂରାଇ ଗିଳିପକାନ୍ତି ନାହିଁ । ଏମାନଙ୍କର ରସ ହିଁ ହେଉଛି ବୁଢ଼ିଆଣୀର ଖାଦ୍ୟ । ସିଂହଳ ଦ୍ୱୀପର ଏକପ୍ରକାର ବୁଢ଼ିଆଣୀର ଖାଦ୍ୟ ହେଉଛି ମୂଷା । ଆମେରିକାର ମାଇଗେଲ ନାମକ ବୁଢ଼ିଆଣୀ ଖାଇଥାଏ ଛୋଟ ଛୋଟ ପକ୍ଷୀମାନଙ୍କୁ । ଆଉ ଜଳଚର ବୁଢ଼ିଆଣୀଙ୍କ ଖାଦ୍ୟ ହେଉଛି ମାଛ, ଜଳର କୀଟ ଓ ଜଳରେ ଥିବା ଲାର୍ଭାଗୁଡ଼ିକ ।

## ମଲା କୀଟ ଖାଉଥିବା ବୁଢ଼ିଆଣୀ

ପରଭୋଜୀ ପ୍ରକୃତି ହେତୁ ବୁଢ଼ିଆଣୀଗୁଡ଼ିକ ମୁଖ୍ୟତଃ ବଞ୍ଚିଥିବା ପ୍ରାଣୀଙ୍କୁ ଶିକାର କରି ଖାଆନ୍ତି । କିନ୍ତୁ ଆମେରିକାର ଏକପ୍ରକାର ବୁଢ଼ିଆଣୀ କେବଳ ମଲା କୀଟ ଓ ପତଙ୍ଗ ଆଦି ଖାଇଥାଏ । ଏହାର ନାଁ ହେଉଛି ହରପିଲସ୍ *(Herpyllus)* । ମଲା କୀଟ ପଡ଼ିଥିବା ସ୍ଥାନକୁ ଏମାନେ ଟାଣି ହୋଇଯାଇ ମଲା କୀଟ ଖାଇଥାଆନ୍ତି । ଏପରିକି ସଂଗ୍ରହାଳୟ (Museum) ଗୁଡ଼ିକରେ ଥିବା ମଲାକୀଟମାନଙ୍କୁ ଏମାନେ ଖାଇବାର ଦେଖାଯାଏ । ଖାଦ୍ୟ ଅଭାବ ହେଲେ ହରପିଲସ୍ ବ୍ୟତୀତ ଅନ୍ୟ ବୁଢ଼ିଆଣୀମାନେ ହଠାତ୍ ମରିଥିବା ପ୍ରାଣୀମାନଙ୍କୁ ମଧ ଖାଇଥାଆନ୍ତି ।

## ନିଜ ଜାଲ ବି ବୁଢ଼ିଆଣୀର ଖାଦ୍ୟ

ଅନେକ ବୁଢ଼ିଆଣୀ ତାଙ୍କ ନିଜ ଜାଲରେ ଛନ୍ଦି ପ୍ରାଣୀମାନଙ୍କୁ ଶିକାର କରିବା ସେମାନଙ୍କ ଅଭ୍ୟାସ । ଜାଲରେ ଛନ୍ଦିହୋଇ ଜୀବଗୁଡ଼ିକ ମରିଗଲେ ମୃତଜୀବକୁ କବଳିତ କରି ପ୍ରାଣୀମାନଙ୍କ ସହ ଛନ୍ଦି ହୋଇଥିବା ଜାଲକୁ ମଧ ଖାଇଥାଆନ୍ତି । କିନ୍ତୁ କେତେକ ବୁଢ଼ିଆଣୀ ଅଛନ୍ତି ଯେଉଁଠାରେ ପୁରୁଷ ବୁଢ଼ିଆଣୀ କେବଳ ଜାଣିଶୁଣି ଜାଲ ଖାଆନ୍ତି । ଏ ଜାତିର ପୁରୁଷ ବୁଢ଼ିଆଣୀଙ୍କର ଶୁକ୍ରଥଳି (Sperm Sac) ଅତି ପ୍ରିୟ ଖାଦ୍ୟ । ଶୁକ୍ରଥଳି ହିଁ ଏକପ୍ରକାର ତିନିକୋଣିଆ ବ୍ୟାଗ୍ ପରି ଥଳି । ପୁରୁଷ ବୁଢ଼ିଆଣୀ ନିଜେ ଏହା ତିଆରି କରିଥାଏ ।

### ସ୍ତ୍ରୀ ବୁଢ଼ିଆଣୀର ଖାଦ୍ୟ ପୁରୁଷ ବୁଢ଼ିଆଣୀ

ନିଜ ଜାତିର ପ୍ରାଣୀ ନିଜେ ଖାଇବା ସତରେ ବଡ଼ ବିଚିତ୍ର । ହେଲେ ବି କେତେକ ପ୍ରାଣୀ କ୍ଷେତ୍ରରେ ଏହା ଦେଖାଯାଏ. । କିନ୍ତୁ ମାଈ ଅଣ୍ଡିରାକୁ ଖାଇବା ଆହୁରି ବିସ୍ମୟ । ତା ବି ଆମ ପ୍ରାଣିଜଗତ୍‌ରେ ଦେଖାଯାଏ । ଏପରି କଥା ବୁଢ଼ିଆଣୀ ଓ ବୁଢ଼ିଆଣୀ ଶ୍ରେଣୀ (Arachnida)ର ଆଉ କେତେକ ପ୍ରାଣୀଙ୍କ ଠାରେ ଦେଖିବାକୁ ମିଳେ । ସାଧାରଣତଃ ମିଳନ (Mating) ପରେ ପୁରୁଷ ବୁଢ଼ିଆଣୀ ଦାଲିଆ ହୋଇଯାଏ । ମାଈ ବୁଢ଼ିଆଣୀ ଏ ଦୁର୍ବଳତାର ସୁଯୋଗ ନେଇ ମିଳନ ପରେ ପରେ ପୁରୁଷ ବୁଢ଼ିଆଣୀକୁ ଖାଇଯାଏ । ବହୁ ବିବାହ କରିବାପାଇଁ ବୋଧହୁଏ ମାଈ ବୁଢ଼ିଆଣୀ ଏପରି କରେ ବୋଲି ଅନୁମାନ କରାଯାଏ । କଙ୍କଡ଼ା ବିଛା ଏ ବୁଢ଼ିଆଣୀ ଶ୍ରେଣୀର ଏବଂ ଏପରି ଖାଇଯିବା ସ୍ୱଭାବ ହିଁ କଙ୍କଡ଼ାବିଛା କ୍ଷେତ୍ରରେ ଅତି ସାଧାରଣ । ଜୀବଜଗତ୍‌ର ସତରେ ଏହା ଏକ ବ୍ୟତିକ୍ରମ । ସ୍ତ୍ରୀ ପୁରୁଷ ପ୍ରାଣୀକୁ ଖାଇଯିବା ହିଁ ସ୍ତ୍ରୀ ର ଏକ ନିଷ୍ଠୁରତାର ପରିଚୟ ।

**ପରସ୍ପର ଖାଦ୍ୟ** (Cannibalism)

ଜୀବଜଗତ୍‌ରେ ଖାଦ୍ୟଖାଦକ ସଂପର୍କ ଅତି ନିବିଡ଼ ଓ ସାଧାରଣ । ପ୍ରକୃତି ଖାଦ୍ୟ ଓ ଖାଦକ ଉଭୟଙ୍କୁ ବଞ୍ଚିବାପାଇଁ ଯଥେଷ୍ଟ ସୁଯୋଗ ଯୋଗାଇଥାଏ । ଏ ସୁଯୋଗକୁ ଯିଏ ଯେତେ ନିଜପାଇଁ ପ୍ରୟୋଗ କଲା ସେ ସେତେ ଭଲରେ ବଞ୍ଚିବ । ଏ ନିୟମରେ ଜୀବଜଗତ୍ ଚଳୁଛନ୍ତି । ଏହାହିଁ ପ୍ରକୃତିର ଖାଦ୍ୟ ଶିକୁଳି (Food Chain) । ତେଣୁ ଦରକାର ପଡ଼ିଲେ ନିଜ ଜାତିର ପ୍ରାଣୀମାନଙ୍କୁ ନିଜେ ଖାଇବା ଅସାଧାରଣ ନୁହେଁ । କଥାରେ ଅଛି "ଦରକାର ପଡ଼ିଲେ ମଣିଷ ମଣିଷକୁ ଖାଇଯାଏ ।" ବୁଢ଼ିଆଣୀ ଜଗତ୍‌ର ମଜା କଥା ହେଲା ଯେ ମାଆ ଛୁଆକୁ ଖାଏ । ଛୁଆ ବଡ଼ ହୋଇ ମାଆକୁ ଖାଏ । ଏପରିକି ଛୁଆମାନେ ପରସ୍ପରକୁ ଖାଆନ୍ତି । ପରସ୍ପରକୁ ଖାଇବାର ସ୍ୱଭାବ ବୁଢ଼ିଆଣୀମାନଙ୍କ ଠାରେ ପ୍ରାୟ ଦେଖାଯାଏ ।

### ବୁଢ଼ିଆଣୀ ଓ ଟାଣ ଖୋଳପାଧାରୀ କୀଟ (Beetle)

ବେଳେବେଳେ ସୁଯୋଗ ଆସିଲେ ବୁଢ଼ିଆଣୀ ଟାଣ ଖୋଳପା ଥିବା କୀଟ (Beetle) ମାନଙ୍କୁ ଖାଇବାପାଇଁ ଚେଷ୍ଟା କରିଥାଏ । ବୁଢ଼ିଆଣୀ ଏକ ପ୍ରକାର ବିଟ୍‌ଲ (Bombardier Beetle)କୁ ଶିକାର କରିବାକୁ ଗଲେ ଏ କୀଟ ତା' ଦେହରୁ ଏକ ଦୁର୍ଗନ୍ଧ ରସ ବୁଢ଼ିଆଣୀ ଉପରକୁ ପିଚ୍‌କାରୀ ପରି ଢାଳିଦିଏ । ଏ ଦୁର୍ଗନ୍ଧରୁ ବୁଢ଼ିଆଣୀ ରକ୍ଷା ପାଇବାକୁ ଚେଷ୍ଟା କରିବା ବେଳକୁ କୀଟଟି ଉଭେଇ ଯାଇଥାଏ । ଏ କୀଟର ନାଁ ବ୍ରାକିନସ୍ *(Brachinus)* । ଏ ବ୍ରାକିନସ୍ ବିଟ୍‌ଲ ପ୍ରାୟ ନେଫିଲିଆ *(Nephila)* ଜାତୀୟ ବୁଢ଼ିଆଣୀଙ୍କୁ ହରାଇ ଦେଇଥାଏ । କାରଣ ନେଫିଲିଆ ବୁଢ଼ିଆଣୀଗୁଡ଼ିକ ନରମ ଓ ବୋକା । କିନ୍ତୁ ଆଉ ଏକ ପ୍ରକାର ବୁଢ଼ିଆଣୀ ଅଛନ୍ତି ସେମାନେ ଖୁବ୍ ଚାଲାକ । ତେଣୁ ସେମାନେ ବ୍ରାକିନସ୍ ବିଟ୍‌ଲକୁ ବୁଦ୍ଧି ପ୍ରୟୋଗ କରି ଶିକାର କରିଥାଆନ୍ତି । ସେମାନେ ହେଲେ ଆର୍ଜିଓପ୍ *(Argiope)* ଜାତୀୟ ବୁଢ଼ିଆଣୀ । ଏ ଜାତୀୟ ବୁଢ଼ିଆଣୀ ବ୍ରାକିନସ୍ ବିଟ୍‌ଲ ଚାରିପଟେ ପ୍ରଥମେ ଜାଲ ଛନ୍ଦିଦିଏ । ବ୍ରାକିନସ୍ ବିଚରା ଜାଣି ନ ପାରି ସଂପୂର୍ଣ୍ଣ ଭାବରେ ଜାଲରେ ଛନ୍ଦି ହୋଇଗଲେ ବୁଢ଼ିଆଣୀ ତାକୁ ଆକ୍ରମଣ କରେ ।

### ମୂଷା ଓ ପକ୍ଷୀ ଆଦି ବୁଢ଼ିଆଣୀର ଖାଦ୍ୟ

ଛୋଟ ଛୋଟ କୀଟପତଙ୍ଗ ବୁଢ଼ିଆଣୀର ମୁଖ୍ୟ ଖାଦ୍ୟ ହେଲେହେଁ କେତେକ ବୁଢ଼ିଆଣୀ କିଛି ମେରୁଦଣ୍ଡୀ ପ୍ରାଣୀମାନଙ୍କୁ ମଧ ଖାଇବାର ଦେଖାଯାଏ । ମୂଷା ଓ ଛୋଟ ଛୋଟ ପକ୍ଷୀ ଆଦି ଏ ମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରେ ଅନ୍ୟତମ । ଅବଶ୍ୟ ସବୁ ବୁଢ଼ିଆଣୀ ଏପରି ବଡ଼ ବଡ଼ ମେରୁଦଣ୍ଡୀ ପ୍ରାଣୀମାନଙ୍କୁ ଖାଆନ୍ତି ନାହିଁ । ସିଂହଳ ଦ୍ୱୀପର ଏକପ୍ରକାର ବୁଢ଼ିଆଣୀ ଜାଲ ସାହାଯ୍ୟରେ ମୂଷାକୁ ଛନ୍ଦି ଖାଇବାର ଦେଖାଯାଏ । ତା' ଛଡ଼ା ଆମେରିକାର ଏକଜାତୀୟ ବୁଢ଼ିଆଣୀ ଶିକାରପାଇଁ ଜାଲ ବୁଣନ୍ତି ନାହିଁ । ସେମାନେ ଗଛ ଆଢୁଆଳରେ



ଚଢ଼େଇଖିଆ ବୁଢ଼ିଆଣୀ



ଗଧିଆ ବୁଢ଼ିଆଣୀ



ମୁଣାଜାଲ ବୁଢ଼ିଆଣୀ



ଫୁଲଣାଜାଲ ବୁଢ଼ିଆଣୀର ଝିଟିପିଟି ଶିକାର



ଜାଲ ନିକ୍ଷେପ ବୁଢ଼ିଆଣୀର ଜାଲ ସହ ଶିକାର ପାଇଁ ଅପେକ୍ଷା

ରହି ଏକାବେଳକେ ଶିକାର ଉପରକୁ ଲମ୍ଫ ଦିଅନ୍ତି । ଛୋଟ ଛୋଟ ପକ୍ଷୀ ଉପରକୁ ଏପରି ଲମ୍ଫ ମାରି ପକ୍ଷୀମାନଙ୍କୁ ଖାଇଥାଆନ୍ତି । ଏ ପ୍ରକାର ବୁଢ଼ିଆଣୀର ନାଁ ହେଉଛି ମାଇଗେଲ୍ । ଏପରି ବଡ଼ ବଡ଼ ପ୍ରାଣୀମାନଙ୍କୁ ସ୍ଥଳଚର ବୁଢ଼ିଆଣୀମାନେ ଖାଇଥାଆନ୍ତି ।

**ବିରୂଡ଼ିର ଖାଦ୍ୟ ଟାରାଣ୍ଟୁଲା ବୁଢ଼ିଆଣୀ**

(Tarantula Spider)

ପୂର୍ବରୁ ଆଲୋଚନା କରାଗଲା ଯେ ବୁଢ଼ିଆଣୀମାନଙ୍କର ଖାଦ୍ୟ କଅଣ କଅଣ ଓ ସେମାନେ କିପରି ଖାଆନ୍ତି । ବୁଢ଼ିଆଣୀମାନଙ୍କର ଅନ୍ୟ ପ୍ରାଣୀମାନଙ୍କୁ ଶିକାର କରି ଖାଇବା ପରେ ଆଉ ଗୋଟିଏ କଥା ଦେଖିବା । ସେଇଟି ହେଉଛି ଏକପ୍ରକାର ବୁଢ଼ିଆଣୀକୁ କିପରି ବିରୁଡ଼ି ଆକ୍ରମଣ କରି ଶିକାର କରେ । ଏ ପ୍ରକାର ବୁଢ଼ିଆଣୀର ନାଁ ହେଉଛି ଟାରାଣ୍ଟୁଲା । ଆକାରରେ ଏମାନେ ଖୁବ୍ ବଡ଼ ଓ ଏମାନଙ୍କର ଗୋଡ଼ଗୁଡ଼ିକ ବେଶ୍ ବଡ଼ ବଡ଼ ଓ ତୀକ୍ଷ୍ଣ । ବାସ କରନ୍ତି ଗଭୀର ଖୋଲ ଗାତ ତଳେ । ରାତିସାରା ଶିକାରରେ ଲାଗିପଡ଼ନ୍ତି । କିନ୍ତୁ ବଡ଼ ମଜା କଥା ଯେ କେତେକ ପ୍ରକାର ବିରୁଡ଼ି ପେଟରେ ଅଣ୍ଡାଗୁଡ଼ିକ ହେବାମାତ୍ରେ ସେମାନେ ଏ 'ଟାରାଣ୍ଟୁଲା ବୁଢ଼ିଆଣୀ'କୁ ଖୋଜନ୍ତି । ତା'ପରେ ବିରୁଡ଼ି ଟାରାଣ୍ଟୁଲାଗୁଡ଼ିକୁ ଆଣି ଗୋଟିଏ ଗୋଟିଏ କରି ତା'ର ଅଣ୍ଡାଦେବା ସ୍ଥାନରେ ବା ସେହି ଟାରାଣ୍ଟୁଲା ଦେହ ଉପରେ ଥୋଇଦିଏ । ସେତେବେଳକୁ ଟାରାଣ୍ଟୁଲାଗୁଡ଼ିକ ମରିଯାଇଥାଆନ୍ତି । ଏହାର କାରଣ ବିରୁଡ଼ି ଅଣ୍ଡାଗୁଡ଼ିକ ଫୁଟିବା ପରେ ବିରୁଡ଼ିର ଲାର୍ଭା ଟାରାଣ୍ଟୁଲାକୁ ଖାଇବ । ଲାର୍ଭାଗୁଡ଼ିକୁ ହଠାତ୍ ଖାଦ୍ୟ ଖୋଜିବାକୁ ପଡ଼ିବ ନାହିଁ । ଏପରିକି କେତେକ କ୍ଷେତ୍ରରେ ବିରୁଡ଼ି ମଣିଷକୁ ଲାହୁଡ଼ ମାରିବା ପରି 'କେତେକ ବୁଢ଼ିଆଣୀ'କୁ ଲାହୁଡ଼ ମାରିଥାଏ । ତେଣୁ ଏ ବୁଢ଼ିଆଣୀ ଲାହୁଡ଼ ଆକ୍ରମଣରେ ମରିଯାଇଥାଆନ୍ତି । ତେଣୁ ବୁଢ଼ିଆଣୀ ପ୍ରାୟ କେତେକ ପ୍ରାଣୀମାନଙ୍କୁ ମାରି ଶିକାର କଲେ ମଧ୍ୟ ବିରୁଡ଼ି ପାଖରୁ ତ୍ରାହି ପାଇବା କେତେକ ବୁଢ଼ିଆଣୀଙ୍କ ଠାରେ ସମ୍ଭବ ହୋଇ ନ ଥାଏ । ଏପରିକି ଏକ ବଡ଼ ବୁଢ଼ିଆଣୀ ଟାରାଣ୍ଟୁଲା ମଧ୍ୟ ବିରୁଡ଼ି ହାବୁଡ଼ରୁ ରକ୍ଷା ପାଇପାରେ ନାହିଁ । ତେଣୁ ବିରୁଡ଼ି ଓ ଟାରାଣ୍ଟୁଲାର ସଂପର୍କ ବଡ଼ ବିଚିତ୍ର ।

ଯାହା ହେଉନା କାହିଁକି ବୁଢ଼ିଆଣୀ ଏକ ଦକ୍ଷ ଶିକାରୀ ପ୍ରାଣୀ । ଅନ୍ତତଃ ବୁଢ଼ିଆଣୀଗୁଡ଼ିକ ଅନେକ ପ୍ରକାର ଅନିଷ୍ଟକାରୀ ଓ ଅପକାରୀ କୀଟପତଙ୍ଗମାନଙ୍କୁ ଆମ ପରିବେଶରୁ ଶିକାର କରି ସଂଖ୍ୟା କମାଇଥାଆନ୍ତି । ତେଣୁ ଆମର ଏମାନେ ଏକ ଉପକାରୀ ପ୍ରାଣୀ । କଳା ବିଧବା ବୁଢ଼ିଆଣୀ (Black widow), ଯନ୍ତା ଦରଜା ବୁଢ଼ିଆଣୀ (Trap door) ଓ ନାଲିପୃଷ୍ଠ ବୁଢ଼ିଆଣୀ (Red dorsal) ଗୁଡ଼ିକ ବିଷାକ୍ତ ବା ମଣିଷପାଇଁ ବିପଦ ହେଲେ ମଧ୍ୟ ଅନେକ ପ୍ରକାର ବୁଢ଼ିଆଣୀ ଆମର ଯଥେଷ୍ଟ କାମରେ ଆସିଥାଆନ୍ତି ।

ବୁଢ଼ିଆଣୀ ଏମିତି ଅନେକ କୀଟମାନଙ୍କୁ ମାରିଦେଇ ଉପକାର କରୁଥିବାରୁ ଇଂଲଣ୍ଡର ଉତ୍ତର ଭାଗରେ ପିଲାମାନେ ଏକପ୍ରକାର ଗୀତ ଗାଇଥାଆନ୍ତି । ସେଇଟି ହେଉଛି –

> Kill a spider, bad luck yours will be
> Until of flies you've swatted fifty-three.
> (Bristowe, 1958)

ଏପରିକି କୀଟ ଦମନର ଉପକାରିତା ବୁଝି ସାଉଦେ (Southey) ନାମକ କବି ଏ ବୁଢ଼ିଆଣୀ ସଂପର୍କରେ ଯେଉଁ ଗୀତଟି ଲେଖିଛନ୍ତି ତାହା ହେଉଛି –

> "Spider thou need'st not run in fear about
> To sheen my curious eyes,
> I won't humanely crush thy bowels out,
> Lest thou should'st eat the flies."

ବୁଢ଼ିଆଣୀ ସତରେ ଗୋଟିଏ ଉପକାରୀ ପ୍ରାଣୀ । ଘରେ ଆମ ସମସ୍ତଙ୍କର, ବଗିଚାରେ ମାଳୀର, କ୍ଷେତରେ ଚାଷୀର ଓ ସବୁସ୍ଥାନରେ ବୈଜ୍ଞାନିକ-ମାନଙ୍କର ଏହା କିଛି ନା କିଛି ଉପକାର କରିଥାଏ । ତେଣୁ ଏମାନଙ୍କୁ ଘୃଣା କରି ମାରିଦେବା ଠିକ୍ ନୁହେଁ ।

# ବୁଢ଼ିଆଣୀ : ଆମ ପରିବେଶ ବନ୍ଧୁ

ଜୀବଟି ସାନ । ନଜରକୁ ବେଶି ଆସେ ନାହିଁ । ହେଲେ ବି ଆଢୁଆଳରେ ରହି କାମ କରିଥାଏ ଅନେକ । କେତେବେଳେ ଦିନରେ ତ' ଆଉ କେତେବେଳେ ରାତିରେ ଲାଗି ପଡ଼ିଥାଆନ୍ତି ଶିକାରରେ । ଅବଶ୍ୟ ଖାଦ୍ୟଲୋଭରେ ଏ ଶିକାର କରିବାକୁ ପଡ଼ିଥାଏ । ଆଉ ତାଙ୍କର ଶିକାର ଆମ ସମସ୍ତଙ୍କ ହିତରେ ଲାଗିଥାଏ । ଏପରି କରାମତି ଦେଖାଯାଇଥାଏ ମାଙ୍କଡ଼ସା ବା ବୁଢ଼ିଆଣୀମାନଙ୍କ ଠାରେ । ଏ କାମପାଇଁ ତାଙ୍କୁ କିଏ ପଇସା ଦେଇ ନ ଥାଏ; କିନ୍ତୁ ଆମ ପରିବେଶପାଇଁ ହୋଇଥାଏ ଅନୁକୂଳ । ତେଣୁ ବୁଢ଼ିଆଣୀଗୁଡ଼ିକୁ 'ପରିବେଶ ବନ୍ଧୁ' ବୋଲି କୁହାଯାଇପାରେ । ଏବେ ଦେଖିବା ବୁଢ଼ିଆଣୀଗୁଡ଼ିକ ଆମର କି କାମରେ ଲାଗନ୍ତି ।

### ୧. ପ୍ରାକୃତିକ ଭାରସାମ୍ୟ ରକ୍ଷାରେ ବୁଢ଼ିଆଣୀ

ଆମ ଚାରିପଟେ ଅନେକ ପ୍ରକାର ପ୍ରାଣୀ ଘେରି ରହିଛନ୍ତି । ଆଉ ଏ ପ୍ରାଣୀମାନେ ପ୍ରକୃତିରେ କିପରି ରହିପାରିବେ ତା'ର ବି ଏକ ହିସାବ ରହିଛି । ପ୍ରତ୍ୟେକ ପ୍ରାଣୀ ଏକ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ସୀମିତ ରହିବାପାଇଁ ରହିଛି ଅନେକ ଉପାୟ । ବୁଢ଼ିଆଣୀ ଏକ ପରଭୋଜୀ ପ୍ରାଣୀ ହୋଇଥିବାରୁ ଅପକାରୀ ଓ ଅନିଷ୍ଟକାରୀ କୀଟମାନଙ୍କୁ ଶିକାର କରି ଖାଇଥାଏ । କିନ୍ତୁ ବୁଢ଼ିଆଣୀ ଯେ ସମସ୍ତଙ୍କୁ ଖାଇଥାଏ ତା' ନୁହେଁ; ତାକୁ ବି ଖାଇବାକୁ ତା' ଚାରିପଟେ ଅଛନ୍ତି ଆଉ କେତେକ ପ୍ରାଣୀ । ସେମାନେ ହେଉଛନ୍ତି ବେଙ୍ଗ ଏଣ୍ଡୁଅ, ଚଢ଼େଇ ଓ ମାଛ । ତେଣୁ ବୁଢ଼ିଆଣୀ ବଂଶ ଏକାବେଳକେ ନ ବଢ଼ି ନିୟନ୍ତ୍ରଣ ଅବସ୍ଥାରେ ରହିଥାଏ । ଏହାହିଁ ପ୍ରାକୃତିକ ଭାରସାମ୍ୟ (Ecological Balance) । ଏହି ଭାରସାମ୍ୟ ଟିକିଏ ଏପାଖ ସେପାଖ ହୋଇଗଲେ ସମୁଦାୟ ଜୀବଜଗତରେ ଘୋର ବିଶୃଙ୍ଖଳା ଦେଖାଦେବ । ଅର୍ଥାତ୍ ବୁଢ଼ିଆଣୀ ମରିଗଲେ ଅନ୍ୟାନ୍ୟ କୀଟ ଆଦି ପ୍ରବଳ ସଂଖ୍ୟାରେ ବଢ଼ିଯିବେ । ତେଣୁ ବାଡ଼ିବଗିଚା ଓ କୃଷିକ୍ଷେତ୍ରରେ ଫସଲ ହାନି ହେବ । ଫସଲ ହାନି ହେଲେ ମନୁଷ୍ୟ ଓ ଆଉ କେତେକ ଜୀବଜନ୍ତୁ ଖାଇବାକୁ ପାଇବେନି । ଅନ୍ୟପକ୍ଷରେ ବୁଢ଼ିଆଣୀ ବହୁତ ହୋଇଗଲେ ସେମାନେ ଅନିଷ୍ଟକାରୀ କୀଟମାନଙ୍କ ସହ ଉପକାରୀ କୀଟମାନଙ୍କୁ ବହୁ ସଂଖ୍ୟାରେ ଖାଇଗଲେ ବି ଆମର ଅନେକ କ୍ଷତି ହେବ । କିନ୍ତୁ ବାସ୍ତବରେ ଏମିତି କେଉଁ ଗୋଟିଏ ପ୍ରାଣୀ ସଂଖ୍ୟା ନ ବଢ଼ି ତାହା ଆପେ ଆପେ ନିୟନ୍ତ୍ରିତ ଅବସ୍ଥାରେ ରୁହେ । ତେଣୁ ଆମର ଅସୁବିଧା ହୁଏନା ।

### ୨. ପରିବେଶ ସୁରକ୍ଷା

ବୁଢ଼ିଆଣୀ ମାଟିତଳ ଗାତଠାରୁ ଆରମ୍ଭ କରି ଗଛଡାଳ, ଜଙ୍ଗଲ, ବଗିଚା, ଧାନକ୍ଷେତ, ଘରକୋଣ, ବହିଥାକ, ଠାକୁରଥାକ ଏପରିକି ଖଟ, ଟେବୁଲ ତଳ ଓ ଟ୍ରେନ୍ ଆଦି ସ୍ଥାନରେ ଦେଖାଯାଆନ୍ତି । ବୁଢ଼ିଆଣୀମାନେ ଶସ୍ୟକ୍ଷେତ୍ରର ଅନିଷ୍ଟକାରୀ ପତଙ୍ଗ ଓ କୀଟମାନଙ୍କର ଏକ ପ୍ରାକୃତିକ ଶତ୍ରୁ । ପୃଥିବୀରେ ବିଭିନ୍ନ ପ୍ରକାର ରାସାୟନିକ ସାର ଆଦି ପ୍ରୟୋଗରେ ଯେତିକି କୀଟ ମରନ୍ତି ତା'ର ବହୁଗୁଣରେ ମରିଯାଆନ୍ତି ଏ ବୁଢ଼ିଆଣୀମାନଙ୍କ ଦ୍ୱାରା । ଆମପରି ଗ୍ରୀଷ୍ମପ୍ରଧାନ ଦେଶମାନଙ୍କରେ 'କଦଳୀ ମାଙ୍କଡ଼ସା' (Banana Spider) ଘରର ଅସରପା ଓ ଛୋଟ ଛୋଟ ସରୀସୃପମାନଙ୍କୁ ମଧ୍ୟ ଖାଇଯାଆନ୍ତି । ସୋୟାବିନ୍ ଓ କପା କ୍ଷେତମାନଙ୍କରେ 'ଗଧିଆ ବୁଢ଼ିଆଣୀ' (Wolf Spider) ଗୁଡ଼ିକ ଏ ଫସଲର ରୋଗ ସୃଷ୍ଟିକାରୀ ପୋକମାନଙ୍କ ଦାଉରୁ ରକ୍ଷା କରନ୍ତି । ଅର୍ଥାତ୍ କ୍ଷେତର ଫଳକୁ ଯେଉଁ ମଥ୍‌ର ଲାର୍ଭା ନଷ୍ଟ କରେ ବୁଢ଼ିଆଣୀ ସେହି ମଥ୍‌ର ଲାର୍ଭାଗୁଡ଼ିକୁ ମାରି ପକାଏ ।

ଆଉ ଗୋଟିଏ କଥା ହେଉଛି ଯେ ଜମିରେ ଚାଷ ନ ଥିବା ବେଳେ କୀଟପତଙ୍ଗ ନ ଥାଆନ୍ତି । ଆଉ ବୁଢ଼ିଆଣୀମାନେ ଖାଦ୍ୟ ପାଇବେ କେଉଁଠୁ ? କିନ୍ତୁ ଆମର ପ୍ରକୃତି ଏଡ଼େ ବିଚିତ୍ର ଯେ ପୁଣି ଜମିରେ ଶସ୍ୟ ହୋଇ ପାଚି ସେଥିରେ ପୋକ ଲାଗିବା ସମୟ ଆସିବା ବେଳକୁ ଏ ଭୋକିଲା ବୁଢ଼ିଆଣୀମାନେ ଅସଂଖ୍ୟ ପୋକ ଖାଇଥାଆନ୍ତି । ତେଣୁ ରୋଗ ଆକ୍ରମଣରୁ ଶସ୍ୟ ରକ୍ଷା ପାଇଯାଇଥାଏ ।

## ୩. ଧାନଜମିରେ ବୁଢ଼ିଆଣୀର କାର୍ଯ୍ୟ

ବୁଢ଼ିଆଣୀ ଶସ୍ୟକ୍ଷେତ୍ର ପାଇଁ ଏକ ପରମ ବନ୍ଧୁ । ଆଉ ଖୁସିର କଥା ଯେ ଶସ୍ୟକ୍ଷେତ୍ରରେ ବିଭିନ୍ନ ପ୍ରକାର ବୁଢ଼ିଆଣୀ ଦେଖାଯାଆନ୍ତି । ସେମାନଙ୍କ ମଧ୍ୟରୁ କେତୋଟି ମୁଖ୍ୟ ଜାତିର ହେଉଛନ୍ତି ଗଧିଆ ବୁଢ଼ିଆଣୀ (Wolf-Spider), କୁବ୍‌ଜା ବୁଢ଼ିଆଣୀ (Sacked Spider), ବଣଭୁଆ ବୁଢ଼ିଆଣୀ (Lynx Spider), ଚାରିଦାନ୍ତିଆ ବୁଢ଼ିଆଣୀ (Four-jawed Spider), ପତ୍ରଡିଆଁ ବୁଢ଼ିଆଣୀ (Jumping Spider) ଓ ହଳଦୀଗୁଣ୍ଡି ବୁଢ଼ିଆଣୀ (Orb Spider) । ଏମାନେ ଜମିର ଶସ୍ୟରେ ଲାଗୁଥିବା କୀଟ ଓ ଲାର୍ଭାଗୁଡ଼ିକୁ ଦମନ କରିବାରେ ଦକ୍ଷ ଶିକାରୀ । ବିଶେଷକରି ନଳୀପୋକ, ମାଟିଆଗୁଣ୍ଡି ପୋକ, ଜାସିଡ୍ (Jassids), ପତ୍ରମୋଡ଼ା ପୋକ ଓ ଧଳାପୃଷ୍ଠ ପତ୍ରଡିଆଁ ପୋକ ଆଦିର ଲାର୍ଭାମାନଙ୍କୁ ଖାଇଯାଇଥାଆନ୍ତି । ଦେଖାଯାଇଛି ଯେ, ଗୋଟିଏ ଗଧିଆ ବୁଢ଼ିଆଣୀ ଦିନକୁ ୧୦ରୁ ୨୦ଟି ମାଟିଆଗୁଣ୍ଡି ପୋକ ଖାଇଥାଏ । ଏଥିରୁ ଅନୁମାନ କରାଯାଇପାରେ ଯେ ଶସ୍ୟକ୍ଷେତ୍ରରେ ଏ ବୁଢ଼ିଆଣୀଗୁଡ଼ିକ କେତେ ପୋକ ମାରି ଖାଇଯାଉଥିବେ !

## ୪. ଅନ୍ୟାନ୍ୟ କୃଷିକ୍ଷେତ୍ରରେ ବୁଢ଼ିଆଣୀ

ଧାନଜମି ବ୍ୟତୀତ କପା, ଆଖୁ, ନଡ଼ିଆ, ଗହମ, ବାଜରା ଓ ବିଭିନ୍ନ ତୈଳଜାତୀୟ ଫସଲ ହେଉଥିବା କ୍ଷେତରେ ବି ଏମାନେ ଥାଆନ୍ତି । ଫିଜି ଦ୍ୱୀପରେ ନଡ଼ିଆ-ତାଳ ଜାତୀୟ ଏକ ଫଳ ଚାଷ କରାଯାଏ । ଏ ଚାଷକୁ ଏକପ୍ରକାର ମଥ୍ ବହୁସଂଖ୍ୟାରେ ନଷ୍ଟ କରିପକାନ୍ତି । କିନ୍ତୁ ଏ ମଥ୍‌ଗୁଡ଼ିକୁ ଚିତ୍ରିତ ପତ୍ରଡିଆଁ ବୁଢ଼ିଆଣୀମାନେ *(Ascyltus pterygodes)* ଆକ୍ରମଣ କରି ବଂଶ ନିପାତ କରିଥାଆନ୍ତି । ଆମେରିକାରେ ଦେଖାଯାଇଛି ଯେ, କେତେକ ଜାତିର ବୁଢ଼ିଆଣୀ କପାପୋକ, ବାମନ ମଥ୍, ମଟର ଆଫିଡ୍ ଆଦି ସାଂଘାତିକ ଅନିଷ୍ଟକାରୀ କୀଟମାନଙ୍କୁ ମାରି ପକାଇଥାଆନ୍ତି । ବିଶେଷକରି ଫଳଉଦ୍ୟାନ ଓ ବଗିଚାପାଇଁ ବି ଏମାନେ ଉପକାରୀ ।

## ୫. ଘର ଭିତରେ ବୁଢ଼ିଆଣୀ

କେବଳ୍ ଶସ୍ୟକ୍ଷେତ୍ର, ଫଳବଗିଚା ଓ ଉଦ୍ୟାନରେ ରହି ଯେ ଏମାନେ ଉପକାର କରନ୍ତି ତାହା ନୁହେଁ, ଆମ ଘରକୋଣ, ବହିଥାକ, ରୋଷେଇଘର ଓ ଖଟତଳେ ଲୁଚିରହି ଅନେକ ସାହାଯ୍ୟ କରନ୍ତି ଏ ବୁଢ଼ିଆଣୀମାନେ । ଏମାନେ ଘରର ବିଭିନ୍ନ ସ୍ଥାନରେ ରହି ମଶା ଓ ମାଛିମାନଙ୍କୁ ଧରି ଜାଲରେ ଛନ୍ଦି ତାଙ୍କ ରସ ଶୋଷି ଖାଇଥାଆନ୍ତି । ବାସ୍ତବିକ୍ କ୍ରାନ୍ତିମଣ୍ଡଳୀୟ ଘରଗୁଡ଼ିକରେ ଏମାନେ ଅଧିକ ସଂଖ୍ୟାରେ ଦେଖାଯାଆନ୍ତି । 'କଦଳୀ ବୁଢ଼ିଆଣୀ' ଆମେରିକାର ଉତ୍ତର ଅଞ୍ଚଳରେ ଅନେକ ସଂଖ୍ୟାରେ ଦେଖାଯାଆନ୍ତି ଓ ସେମାନେ ଅନ୍ୟାନ୍ୟ କୀଟ ସହ ଅସରପାମାନଙ୍କୁ ବହୁସଂଖ୍ୟାରେ ନିପାତ କରିଥାଆନ୍ତି । ଏମାନଙ୍କର ବୈଜ୍ଞାନିକ ନାମ *Heteropoda venatoria* ।

ମଶା ଓ ମାଛି ବ୍ୟତୀତ ଛାରପୋକ (Bed bug) ମାନଙ୍କୁ ମାରିବାରେ ଏ ବୁଢ଼ିଆଣୀଗୁଡ଼ିକ ଟାଣୁଆ । ଆମେ ରହୁଥିବା ବା ଶୋଉଥିବା ଖଟତଳେ ରହି ସେଠାରେ ଥିବା ଛାରପୋକମାନଙ୍କୁ ଏମାନେ ମଧ୍ୟ ମାରିଥାଆନ୍ତି । ୧୯୨୩-୨୪ ମସିହାରେ ଏଥେନ୍‌ସର ଗ୍ରୀକ୍ ଶରଣାର୍ଥୀ ଶିବିରଗୁଡ଼ିକରେ ଏତେ ସଂଖ୍ୟାରେ ଛାରପୋକ ହୋଇଥିଲେ ଯେ ପରିସ୍ଥିତି ଅସମ୍ଭାଳ ହୋଇ ପଡ଼ିଥିଲା । ଲୋରାଣ୍ଡୋ (N.T.

Lorando) ନାମକ ବ୍ୟକ୍ତି ଏ ଛାରପୋକଗୁଡ଼ିକୁ ୧୯୨୫ ମସିହାରେ (ବର୍ଷକ ମଧ୍ୟରେ) 'କଙ୍କଡ଼ା ବୁଢ଼ିଆଣୀ' (Crab Spider) ମାଧ୍ୟମରେ ଲୋପ କରିପାରିଥିଲେ । ତା'ପରେ ଏ ବୁଢ଼ିଆଣୀର ମହତ୍ତ୍ୱ ବୁଝି କଙ୍କଡ଼ା ବୁଢ଼ିଆଣୀ *(Thanatus peninsulanus)* ଗୁଡ଼ିକୁ ବିଜ୍ଞାନାଗାରରେ ଥିବା ଛାରପୋକମାନଙ୍କୁ ମାରିବାପାଇଁ ନିଆ ଯାଇଥିଲା । ଏ ପ୍ରକାର ବୁଢ଼ିଆଣୀମାନଙ୍କୁ ମଧ୍ୟ ଶସ୍ୟଗୋଦାମ (Ware-house) ଘରେ ଦେଖିବାକୁ ମିଳେ । ଏମାନେ ସଂଚିତ ଶସ୍ୟଗୁଡ଼ିକରେ ଲାଗୁଥିବା ଓ ନଷ୍ଟ କରୁଥିବା ପୋକ (Pest) ମାନଙ୍କୁ ଦମନ କରିଥାଆନ୍ତି । ନିଉୟର୍କର ଶସ୍ୟଗୋଦାମ ଘରେ ବହୁସଂଖ୍ୟାରେ ଏମାନେ ଥାଆନ୍ତି ।

### ୬. ଖାଦ୍ୟରୂପେ ବୁଢ଼ିଆଣୀ

ବୁଢ଼ିଆଣୀ ସିନା ଶିକାର କରି ଅନେକ କୀଟପତଙ୍ଗମାନଙ୍କୁ ଖାଇଥାଏ; ମାତ୍ର ଏମାନଙ୍କୁ ମଧ୍ୟ କେତେକ ଦେଶରେ ଖାଇବାର ଦେଖାଯାଏ । ଲାଓସ ଦେଶର ଲୋକମାନେ ଦୁଇପ୍ରକାର ବୁଢ଼ିଆଣୀକୁ ଖାଦ୍ୟରୂପେ ବ୍ୟବହାର କରନ୍ତି । ସେ ଦୁଇଟି ହେଉଛି ନେଫିଲା *(Nephila)* ଓ ମାଇଗାଲୋମର୍ଫେ *(Mygalomorphae)* । ମାଇଗାଲୋମର୍ଫା ଜାତିର ବୁଢ଼ିଆଣୀ ଅପେକ୍ଷାକୃତ ବଡ଼ । ଏହାର ଗୋଡ଼କୁ ଛିଣ୍ଡାଇ କାଠିରେ ଗୁନ୍ଥି ନିଆଁରେ ପୋଡ଼ି ଖିଆଯାଏ । ନେଫିଲାର କେବଳ ପେଟପାଖକୁ ଲୁଣରେ ଭାଜି ଖାଇବାର ଦେଖାଯାଏ । ଶ୍ୟାମଦେଶରେ ବୁଢ଼ିଆଣୀ ଭଜା ଏକ ସୁସ୍ୱାଦୁ ଖାଦ୍ୟ । ନିଉଗିନି ଓ ଆଉ କେତେକ ଦେଶରେ ସାଇକେଲ ଚକ ପରି ଏକ ରାକ୍ଷସ ବୁଢ଼ିଆଣୀ ମାଂସର ଚାହିଦା ଅନେକ । ଉତ୍ତରଶ୍ୟାମର ଲାଓସବାସୀ ପୁଷ୍ଟିସାର ଓ ତୈଳପାଇଁ ଏମାନଙ୍କୁ ବହୁତ ଖାଆନ୍ତି । ପକ୍ଷୀ ଓ ମାଛମାନଙ୍କର ଏମାନେ ମଧ୍ୟ ଏକ ଖାଦ୍ୟ ।

ଭାରତରେ ବୁଢ଼ିଆଣୀମାନଙ୍କୁ ଖାଦ୍ୟ ଭାବରେ ଖିଆନଗଲେ ମଧ୍ୟ ଭାରତ ବାହାରେ କେତେକ ସ୍ଥାନରେ ଏହାର ଚାହିଦା ବେଶ୍ ଅଧିକ । ବୁଢ଼ିଆଣୀ ଭଜା ସତରେ କେଡ଼େ ମଜା ! ତାର ଉଦାହରଣ ଦେଖାଯାଏ ଭିଏତ୍‌ନାମରେ । ଅତ୍ୟାଚାରୀ ଖେମର ରୁଜ୍ ଶାସନ କାଳରେ ଭିଏତ୍‌ନାମର ଶରଣାର୍ଥୀମାନେ ପେଟ ବିକଳରେ ସେ ଦେଶରେ ମିଳୁଥିବା ଏକ ପ୍ରକାର ଭୟଙ୍କର ବୁଢ଼ିଆଣୀଙ୍କୁ ଖାଦ୍ୟ ଭାବରେ ଗ୍ରହଣ କରିଥିଲେ । ତା ପର ଠାରୁ ଭିଏତ୍‌ନାମରେ ଏହି



ଭାରତ ବାହାରେ ଖାଦ୍ୟ ହିସାବରେ ବୁଢ଼ିଆଣୀର ଚାହିଦା

ବୁଢ଼ିଆଣୀ ପ୍ରସ୍ତୁତ ଖାଦ୍ୟ ଏକ ଜାତୀୟ ସୁସ୍ୱାଦୁ ଖାଦ୍ୟରେ ପରିଣତ ହୋଇଛି । ଏବେ ଲୋକଙ୍କ ମଧ୍ୟରେ ଏହି ଭଜାର ବେଶ୍ ଚାହିଦା ରହିଛି । ଏବେ ସ୍କଅନ୍ ବଜାରରେ ବେପାରୀମାନେ ବୁଢ଼ିଆଣୀ ଭଜା ପ୍ରସ୍ତୁତ କରି ଗ୍ରାହକମାନଙ୍କୁ ବିକ୍ରୟ କରିବାର ଦେଖାଯାଏ ।

## ୭. ବୁଢ଼ିଆଣୀର ଜାଲର ବ୍ୟବହାର

ବୁଢ଼ିଆଣୀ ତିଆରି କରୁଥିବା ଜାଲର ସୂତା ଖୁବ୍ ଟାଣ । ଏହାର ସ୍ଥିତିସ୍ଥାପକତା ବି ବେଶି । ଏହି ସୂତାକୁ ଟାଣିଲେ ପ୍ରାୟ ମୂଳ ଲମ୍ବର ଶତକଡ଼ା ୮୦ ଭାଗ ପର୍ଯ୍ୟନ୍ତ ଲମ୍ବିପାରେ । ପ୍ରାକୃତିକ ସୂତା ହିସାବରେ ବୁଢ଼ିଆଣୀ ସୂତା ଖୁବ୍ ଶକ୍ତ । ପ୍ରାୟ ୦.୦୧ ସେ.ମି. ବ୍ୟାସର ସୂତା ୮୦ ଗ୍ରାମ୍ ଓଜନିଆ ଜିନିଷକୁ ସମ୍ଭାଳିପାରେ । କେତେକ ଜାତିର ବୁଢ଼ିଆଣୀ ସୂତାରୁ କୃତ୍ରିମ ହୃତ୍‌ପିଣ୍ଡ ଭାଲ୍‌ଭ (Artificial Heart Valve), କୃତ୍ରିମ ଶିରାପ୍ରଶିରା (Artificial Blood Vessels) ଓ ଅନ୍ୟାନ୍ୟ ସୂକ୍ଷ୍ମ ଶଲ୍ୟ ଉପଯୋଗୀ ଉପକରଣ (Surgical Appliances) ତିଆରିପାଇଁ ଗବେଷଣା ଚାଲିଛି । ଆଗରୁ ଏହାର ସୂତାଗୁଡ଼ିକୁ କେତେକ ଦୃଷ୍ଟି ଉପଯୋଗୀ ଯନ୍ତ୍ରପାତି (Optical instruments) ତିଆରିରେ ବ୍ୟବହାର କରାଯାଉଥିଲା । ପାପୁଆ ଅଧିବାସୀମାନେ (Papuan Natives) ବୁଢ଼ିଆଣୀ ଜାଲଗୁଡ଼ିକର ସୂତାକୁ ମାଛଧରା ଜାଲ ଓ ରେଶମ ସଜାପାଇଁ ବ୍ୟବହାର କରୁଥିଲେ ।

## ୮. ବିଜ୍ଞାନାଗାରରେ ବୁଢ଼ିଆଣୀ

ବୁଢ଼ିଆଣୀଗୁଡ଼ିକ ସୁବିଧାରେ ମିଳୁଥିବାରୁ ଗବେଷଣା କାର୍ଯ୍ୟପାଇଁ ଏହା ଏକ ସୁନ୍ଦର ପ୍ରାଣୀ ଭାବରେ ଗ୍ରହଣ କରାଯାଏ । ଏହାର ବିଷ ଅପସ୍ମାର ରୋଗ ଚିକିତ୍ସାରେ ବ୍ୟବହାର ପାଇଁ ଗବେଷଣା ଚାଲିଛି । ଏପରିକି ଆମେରିକାର ଦେଶରକ୍ଷା ବିଭାଗ ଏଥିରୁ ଗୁଳି ନିରୋଧକ ଜିନିଷ ପ୍ରସ୍ତୁତିପାଇଁ ଗବେଷଣା ଚଳାଇଛନ୍ତି । ଲାଇକୋସା *(Lycosa)* ନାମକ ବୁଢ଼ିଆଣୀର ଧାନକ୍ଷେତରେ ଉପକାରିତା ଥିବାରୁ ତା'ର ବଂଶବୃଦ୍ଧି ପାଇଁ ଅନେକ ଯୋଜନା ବର୍ତ୍ତମାନ ଚାଲିଛି । ଭବିଷ୍ୟତରେ ଏହାର ଚାଷ ଭଲଭାବରେ ହେଲେ ଅନ୍ତତଃ ବିଭିନ୍ନ ରାସାୟନିକ ସାର ଓ ପଦାର୍ଥର ବ୍ୟବହାର ଜମିରେ କମିଯିବ ବା ଆଦୌ ହେବ ନାହିଁ ।

## ବୁଢ଼ିଆଣୀର ଅପକାରିତା

ବୁଢ଼ିଆଣୀମାନେ ଅନେକ ଉପକାର କଲେ ମଧ୍ୟ କିଛିଟା କ୍ଷତି କରିଥାଆନ୍ତି । ତାହାର ମାତ୍ରା କମ୍ । ବଗିଚାରେ ଦେଖାଯାଉଥିବା ବୁଢ଼ିଆଣୀ (Garden Spider)ମାନେ ବେଳେବେଳେ ଫସଲ ନଷ୍ଟ





କଙ୍କଡ଼ା ବୁଢ଼ିଆଣୀ : ଫୁଲ ଉପରେ ବସି ନିଜକୁ ଫୁଲ ରଙ୍ଗରେ ମିଶାଇ ଶତ୍ରୁ ମୁହଁରୁ ରକ୍ଷା

କରିପକାନ୍ତି । ବଢୁଥିବା ଗଛର ଅଗକୁ ଜାଲରେ ଛନ୍ଦିଦେବା ଯୋଗୁଁ ଗଛ ଆଉ ବଢ଼ିପାରେ ନାହିଁ । ବିଶେଷକରି ଗଞ୍ଜେଇ ଚାଷୀମାନେ ଏ ପ୍ରକାର ଅସୁବିଧାର ସମ୍ମୁଖୀନ ହୋଇଥାଆନ୍ତି । କଢ଼ ଧରିବା ବେଳକୁ ବୁଢ଼ିଆଣୀଗୁଡ଼ିକ କଢ଼ଗୁଡ଼ିକୁ ଜାଲରେ ଛନ୍ଦିଦେବାଦ୍ୱାରା କଢ଼ ଆଉ ଫୁଟି ନ ପାରି ଗଞ୍ଜେଇ ଚାଷର କ୍ଷତି ଘଟାନ୍ତି । ବଗିଚାରେ ବି ପ୍ରାୟ ସେପରି କେତେକ ଫୁଲ ଓ କଢ଼ରେ ଜାଲ କରୁଥିବା ଯୋଗୁଁ ଫଳ ଆଉ ହୋଇପାରେ ନାହିଁ । ତା' ଛଡ଼ା ଅଷ୍ଟ୍ରେଲିଆ ମହାଦେଶର ଆଟ୍ରାକ୍ସ *(Atrax)* ନାମକ 'କାହାଳୀ-ବସା ବୁଢ଼ିଆଣୀ' (Funnel-web Spider), ଆମେରିକା, କାନାଡ଼ା ଓ ହାୱାଇ ଦ୍ୱୀପର 'କଳା-ବିଧବା ବୁଢ଼ିଆଣୀ', (Black-widow Spider) 'ଜୋତା ବୋତାମ ବୁଢ଼ିଆଣୀ' (Shoe-button Spider) ଓ ଭାରତରେ ଦେଖାଯାଉଥିବା 'ଧୂସର ବୁଢ଼ିଆଣୀ' (Brown recluse) ଆଦି ବିଷାକ୍ତ ହୋଇଥିବାରୁ ଏମାନେ ମନୁଷ୍ୟକୁ ବି କେତେକ ସମୟରେ ଆକ୍ରମଣ କରିଥାଆନ୍ତି । ଲୋହିତ ଭାରତୀୟମାନେ ଲାଟ୍ରୋଡେକ୍ଟସ୍ *(Latrodectus)* ବୁଢ଼ିଆଣୀର ବିଷକୁ ଧନୁତୀରରେ ବ୍ୟବହାର କରିଥାଆନ୍ତି । ଏହାର ଅଣ୍ଡା ମଧ୍ୟ ବିଷାକ୍ତ । ତେବେ ଏ ବିଷାକ୍ତ ବୁଢ଼ିଆଣୀଗୁଡ଼ିକ ସାପ ଫଣା ମାରିବା ପରି ଆକ୍ରମଣ କରିଥାଆନ୍ତି । କେତେକ ବୁଢ଼ିଆଣୀ ବିଷଦ୍ୱାରା ମଣିଷ ମରିବାର ଦେଖାଯାଇଛି । ବୁଢ଼ିଆଣୀ ଜଗତର ସବୁଠାରୁ ବଡ଼ ବୁଢ଼ିଆଣୀ 'ଟାରାଣ୍ଟୁଲା' (Tarantula) ସାପ ଓ ପକ୍ଷୀମାନଙ୍କ ସହ ଲଢ଼େଇ କରି ପକ୍ଷୀମାନଙ୍କୁ ମାରିଦେବାର ଜଣାଯାଏ । ତେବେ ଭାରତରେ ଦେଖାଯାଉଥିବା ବିଷାକ୍ତ ବୁଢ଼ିଆଣୀମାନେ ସେତେ ମାରାତ୍ମକ ନୁହେଁ ।

ଯାହାହେଉନା କାହିଁକି ଅପକାର ତୁଳନାରେ ଉପକାର ଅନେକ । ଏବେ କୀଟନାଶକ ଔଷଧ ଓ ରାସାୟନିକ ସାର ପ୍ରୟୋଗଦ୍ୱାରା ଏମାନଙ୍କ ସଂଖ୍ୟା କ୍ରମେ କମିଯାଉଛି । ଧୀରେ ଧୀରେ ମରିଯାଉଛନ୍ତି ବୁଢ଼ିଆଣୀମାନେ । ତେଣୁ ଅନିଷ୍ଟକାରୀ କୀଟମାନଙ୍କ ସଂଖ୍ୟା ବଢ଼ିଯାଉଛି । ନିମପିଡ଼ିଆ, ନିମତେଲ, କରଞ୍ଜ ତେଲ ଓ କରଞ୍ଜ ରସ ଆଦି ପ୍ରାକୃତିକ ଜିନିଷ ଆମ କ୍ଷେତରେ ବ୍ୟବହାର କରି ରାସାୟନିକ ଦ୍ରବ୍ୟ ବ୍ୟବହାର ନ କରିବା ଉଚିତ । ତାହା ହେଲେ ଉଦ୍ଭିଦ ବିଷଗୁଡ଼ିକ କୀଟମାନଙ୍କୁ ଜମିରେ ପଶେଇ ଦେବ ନାହିଁ ଏବଂ ଆମର ବୁଢ଼ିଆଣୀମାନେ ମଧ୍ୟ ସୁରକ୍ଷିତ ଅବସ୍ଥାରେ ରହିପାରିବେ । ବୁଢ଼ିଆଣୀମାନଙ୍କର ବଂଶବିସ୍ତାର, ଖାଦ୍ୟ ଓ ଚଳପ୍ରଚଳରେ ବାଧା ସୃଷ୍ଟି ହେବ ନାହିଁ । ତେବେ ଯାହାହେଲେ ବି ମାଙ୍କଡ଼ସା ବା ବୁଢ଼ିଆଣୀଗୁଡ଼ିକ ଚାଲାକ, ଧୂର୍ତ୍ତ ଓ ବଞ୍ଚିବାର କୌଶଳ ଭଲ ଭାବରେ ଜାଣିଥିବାରୁ ଅନେକ ଦିନର ଏ ପ୍ରାଣୀ ଏ ପର୍ଯ୍ୟନ୍ତ ବଞ୍ଚି ରହିଛନ୍ତି । ତେଣୁ ଆମେ ଏହାକୁ ନଗଣ୍ୟ, ଅପରିଷ୍କାର, ଅଳନ୍ଧୁ ସୃଷ୍ଟିକାରୀ ଶିକାରୀ ପ୍ରାଣୀ ଭାବି ନ ମାରି ତାଙ୍କ ବଂଶବୃଦ୍ଧିରେ ସାହାଯ୍ୟ କରିବା ଆଶା କରାଯାଏ । ତେଣୁ ସତରେ ମାଙ୍କଡ଼ସା କଦାପି ମାଙ୍କଡ଼ ପ୍ରକୃତିର ନୁହେଁ ।



# ବୁଢ଼ିଆଣୀ : ଏକ ବିନ୍ଧାଣି

ଗାନ୍ଧିଜୀ କୁହନ୍ତି – ''କୁଟି ଖାଇ କାଟି ପିନ୍ଧ ।'' ଅର୍ଥାତ୍ ପିନ୍ଧିବା ପାଇଁ ତୁଳାରୁ ସୂତା କାଟି ପିନ୍ଧ । ସତରେ ପିନ୍ଧିବାକୁ ହେଲେ ପୂର୍ବ କାଳରେ ମଣିଷ ଏମିତି ହାତରେ ଲୁଗା ଆଦି ତିଆରି କରୁଥିଲା । ଏବେ କେତେକ ହାତରେ ଓ ବେଶି ସଂଖ୍ୟାରେ ଯନ୍ତ୍ରରେ ତିଆରି ହେଉଛି । କିନ୍ତୁ ପ୍ରାଣିଜଗତ୍‌ରେ ଏମିତି ଏକ ପ୍ରାଣୀ ଅଛି ଯେ କି ସେ ନିଜେ ନିଜେ ସୂତା ବାହାର କରି ଏବଂ ଘର ତିଆରି କରି ସେଠାରେ ରୁହେ । ଏକ 'ବିନ୍ଧାଣି' ଭାବେ ସୁପରିଚିତ । ସେ ହେଉଛି ସବୁଠାରେ ଦେଖାଯାଉଥିବା ବୁଢ଼ିଆଣୀ ବା ମାଙ୍କଡ଼ସା । ବୁଢ଼ିଆଣୀର ଏ ଜାଲକୁ 'ବୁଢ଼ିଆଣୀ ଜାଲ' (Spider Web) ବା 'ବୁଢ଼ିଆଣୀ ବସା' କୁହାଯାଏ । ଏ ବସାକୁ କିଏ ବା ଦେଖି ନ ଥିବେ ! ସାଧାରଣ କଥାରେ ଏହାକୁ 'ଅଳନ୍ଧୁ' କୁହାଯାଏ । ମଜା କଥା ହେଲା ଯେ ଲୋକ ହୁଅନ୍ତୁ ବା ପିଲା ହୁଅନ୍ତୁ ସେମାନେ ଏ ବୁଢ଼ିଆଣୀଗୁଡ଼ିକୁ ଦେଖି ନ ଥିଲେ ମଧ୍ୟ ଅଳିଆ ସୃଷ୍ଟି କରୁଥିବା ଅଳନ୍ଧୁକୁ ସମସ୍ତେ ଦେଖିଥିବେ । ଏବେ ଦେଖିବା ଏ ଅଳନ୍ଧୁ କଅଣ ଓ କିପରି ତିଆରି କରିଥାଏ ଏ ବୁଢ଼ିଆଣୀ !

## ବୁଢ଼ିଆଣୀ ଜାଲ କେମିତି ହୁଏ ?

ବୁଢ଼ିଆଣୀ ଜାଲ ବୁଢ଼ିଆଣୀ ନିଜେ ତିଆରି କରିଥାଏ । ଏ ଜାଲ ଏକପ୍ରକାର ତରଳ ପଦାର୍ଥ ବା ସୂତାରେ ତିଆରି । ଏ ତରଳ ପଦାର୍ଥ ପେଟତଳେ ଥିବା ଏକପ୍ରକାର ଗ୍ରନ୍ଥିରୁ ବାହାରିଥାଏ । ଯାହା ହେଉଛି ଜାଲଗ୍ରନ୍ଥି (Spinneret) । ଏ ଜାଲଗ୍ରନ୍ଥି ଚାରି (ଦୁଇଯୋଡ଼ା) ବା ଛଅ (ତିନିଯୋଡ଼ା)ଟି । ଏହି ଗ୍ରନ୍ଥିରୁ ବୁଢ଼ିଆଣୀ ଏକପ୍ରକାର ତରଳ ରସ ବାହାର କରେ । ସେହି ରସ ପବନରେ ଶୁଖିଯାଇ ଖୁବ୍ ସୂକ୍ଷ୍ମ ଟାଣ ସୂତାରେ ପରିଣତ ହୁଏ । ଏହି ସୂତାକୁ ସେ ଗ୍ରନ୍ଥିରୁ କାଢ଼ି କାଢ଼ି ଜାଲ ବୁଣିଥାଏ । ଆଉ ବିଭିନ୍ନ ପ୍ରକାର ବୁଢ଼ିଆଣୀ ବିଭିନ୍ନ ପ୍ରକାରର ଜାଲ ତିଆରି କରନ୍ତି । ମାତ୍ର ଜାଲଗୁଡ଼ିକର ଆକାର ଏକ ନିର୍ଦ୍ଦିଷ୍ଟ ପ୍ରକାରର । ବିଭିନ୍ନ ଜାତିର ବୁଢ଼ିଆଣୀ ବିଭିନ୍ନ ପ୍ରକାର ଜାଲ କଲେ ମଧ୍ୟ ପ୍ରତ୍ୟେକ ଜାତିର ଜାଲର ଆକାର ନିର୍ଦ୍ଦିଷ୍ଟ ପ୍ରକାରର ।

## ବୁଢ଼ିଆଣୀର ଜାଲବୁଣା କୌଶଳ

ବୁଢ଼ିଆଣୀର ଜାଲବୁଣା କୌଶଳ ଅତି ସୁନ୍ଦର । ବଗିଚା ବା ଅନ୍ୟ କୌଣସି ସ୍ଥାନରେ ଥିବା ବୁଢ଼ିଆଣୀ ପ୍ରଥମେ ଗୋଟିଏ ଡାଳ ବା କିଛି ସ୍ଥାନ ଠିକ୍ କରିସାରି ତା' ଉପରେ ଯାଇ ବସେ । ତା'ପରେ ଯେଉଁ ଦିଗକୁ ପବନ ବୋହୁଥାଏ, ସେହି ଆଡ଼କୁ ସେ ସୂତା ତିଆରି କରି ଛାଡୁଥାଏ । ସୂତାଟି ତେଣୁ ପବନରେ ଉଡ଼ିଯାଇ ଅନ୍ୟ ସ୍ଥାନରେ ଲାଗିଯାଏ । ତା'ପରେ ବୁଢ଼ିଆଣୀ ସେ ସୂତା ଖିଅ ଧରି ସେ ସ୍ଥାନକୁ ନୂଆ ସୂତା ଛାଡ଼ି ଛାଡ଼ି ଯାଇ ହାଜର ହୋଇଯାଏ । ପୁଣି ସେହି ବାଟ ଦେଇ ପ୍ରାୟ ଅଧା ଦୂର ଫେରିଆସେ । ସେଠାରୁ ପୁଣି ସୂତା ଛାଡ଼ି ସିଧା ତଳକୁ ଖସିଆସେ । ତଳେ ଗୋଟିଏ ସ୍ଥାନରେ ସୂତାଟିକୁ ଅଟକାଇ ରଖି ସେହି ସୂତାକୁ ଧରି ଉପରକୁ ଉଠିଆସେ । ଏପରି ଭାବରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଗୋଟିଏ ସୂତା ଦେଇ ଓ ଅନ୍ୟ ଏକ ସୂତା ବାହାର କରି ଅଳ୍ପ ସମୟ ଭିତରେ ସେ ଏକ ସୁନ୍ଦର ଜାଲ ବୁଣିଦିଏ । ଥରେ ଜାଲ ତିଆରି ଆରମ୍ଭ କଲେ ବିଶ୍ରାମ ନ ନେଇ ଏକା ଦମ୍‌ରେ ଜାଲ ଶେଷ କରିବାରେ ଲାଗିପଡ଼େ । ଏମିତି ଜାଲ ତିଆରି କଲାବେଳେ ସତରେ ଜଣାପଡ଼େ ସତେ ଯେପରି ସୂତାରିଲ୍‌ରୁ ସୂତାଗୁଡ଼ା ବାହାରି ଯାଉଛି ! ଏମାନଙ୍କ ଜାଲର ନକ୍ସା ବଡ଼ ଆଶ୍ଚର୍ଯ୍ୟଜନକ । ଭିନ୍ନ ଭିନ୍ନ ଜାତିର ବୁଢ଼ିଆଣୀ ଭିନ୍ନ ନକ୍ସାରେ ଜାଲ ବୁଣନ୍ତି ।




ମାଈ ବୁଢ଼ିଆଣୀ ଶରୀରର ଅନ୍ତଃଗଠନ

ଜାଲ ବୁଣା ସରିଯିବା ପରେ ସେହି ଜାଲ ଭିତରୁ ଗୋଟିଏ ସୂତାରେ ସେ ତା'ର ଗୋଡ଼କୁ ଛନ୍ଦି ଦେଇ ପାଖରେ କେଉଁଠି ଲୁଚି କରି ରହିଥାଏ । ଜାଲରେ ଶିକାର ପଡ଼ିବା ମାତ୍ରେ ଜାଲଟି ଥରିବାକୁ ଲାଗେ । ଏହି ଥରାରୁ ବୁଢ଼ିଆଣୀ ଶିକାରର ଆସିବା ଜାଣିପାରି ହଠାତ୍ ଛୁଟିଆସେ । ତା'ପରେ ଦାନ୍ତ ପରି ଅସ୍ତ୍ର ଦୁଇଟି ଦ୍ୱାରା ଶିକାରର ଦେହରେ ବିଷ ପ୍ରୟୋଗ କରି ତାକୁ ମାରିପକାଏ ଓ ପରେ ପରେ ତା' ଦେହରୁ ରସ ଶୋଷି ଖାଇଥାଏ । ଅଣ୍ଡାରୁ ଛୁଆ ଫୁଟିବା ମାତ୍ରେ ଛୁଆ ପବନ ଗତିରେ କେଉଁ ଅଜଣା ସ୍ଥାନକୁ ଉଡ଼ିଯାଏ । ଛୁଆଟି ଉଡ଼ିବାବେଳେ ପ୍ରଥମେ ବୁଢ଼ିଆଣୀଟି ନିଜ ପରିବେଶର ଗୋଟିଏ ଉଚ୍ଚ ସ୍ଥାନକୁ ଯାଇ ପଛପଟୁ ପ୍ରଥମେ ଲମ୍ବ ସୂତା ବାହାର କରେ । ଏହି ସୂତାକୁ ପବନ ଧରେ ଏବଂ ପରେ ପରେ ବୁଢ଼ିଆଣୀଟି ଉଡ଼ିବାକୁ ଆରମ୍ଭ କରେ । ତା'ପରେ ଛୁଆଟି ଜାଲ ତିଆରି ଆରମ୍ଭ କରେ । ଛୁଆର ପବନରେ ଏ ଯାତ୍ରାକୁ 'ବେଲୁନ୍‌ଯାତ୍ରା' ବୋଲି କୁହାଯାଏ ।

ତେବେ ବୁଢ଼ିଆଣୀ ଜାଲହିଁ ନିର୍ଭର କରେ ପବନ ଉପରେ । ପବନ ଉପରେ ନିର୍ଭର କରି ନିର୍ଦ୍ଦିଷ୍ଟ ଦିଗ ଜାଣିପାରି ବୁଢ଼ିଆଣୀମାନେ ଜାଲ ତିଆରି କରନ୍ତି । ଜାଲର ପ୍ରଥମ ଖିଅ ବା ସୂତା ତିଆରି ପବନଦ୍ୱାରା ନିୟନ୍ତ୍ରିତ ହୋଇଥାଏ ।

## ବୁଢ଼ିଆଣୀ ଜାଲର ପ୍ରକୃତି

ବୁଢ଼ିଆଣୀ ଜାଲର ସୂତା ବଡ଼ ବିଚିତ୍ର । ଏତେ ସରୁ ସୂତାରେ ଏତେ ବଡ଼ ବୁଢ଼ିଆଣୀ ରହି ଦୋହଲୁଥିଲେ ବି ତାହା ଛିଣ୍ଡେ ନାହିଁ । ପ୍ରବଳ ବାତ୍ୟାରେ ବି ଖଣ୍ଡବିଖଣ୍ଡିତ ହୋଇଯାଏ ନାହିଁ । ବିଭିନ୍ନ ବୁଢ଼ିଆଣୀ ଭିନ୍ନ ଭିନ୍ନ ମୋଟେଇର ସୂତା ପ୍ରସ୍ତୁତ କରନ୍ତି । ଏହି ସୂତାର ସ୍ଥିତିସ୍ଥାପକତା ବହୁତ । ଏହାକୁ ଟାଣିଲେ ମୂଳ ଲମ୍ବର ପ୍ରାୟ ୮୦ ଶତକଡ଼ା ପର୍ଯ୍ୟନ୍ତ ଲମ୍ବିଥାଏ । ଜୀବଜଗତର ଯେତେ ପ୍ରାଣୀ ସୂତା ବାହାର କରନ୍ତି ତା' ମଧ୍ୟରେ ବୁଢ଼ିଆଣୀ ସୂତା ସବୁଠାରୁ ଟାଣ ବା ଶକ୍ତ ବୋଲି ଜଣାଯାଏ । ଏ ସୂତା ବିଭିନ୍ନ ପ୍ରକାର ରାସାୟନିକ ଦ୍ରବ୍ୟ ନେଇ ଗଠିତ । ସେଗୁଡ଼ିକ ହେଉଛି ଗ୍ଲାଇକଲ୍ (Glycol),

ଆଲେନାଇନ୍ (Alanine), ଲିଉସିନ୍ (Leucine), ଗ୍ଲୁଟାମିକ୍ ଅମ୍ଳ (Glutamic acid), ଟାଇରୋସିନ୍ (Tyrosine), ଡାଇଆମିନୋ ଅମ୍ଳ (Diamino acid) ଓ ତୈଳ ଅମ୍ଳ (Fatty acid) । ମୋଟାମୋଟି ଭାବରେ କହିବାକୁ ଗଲେ ଏହି ସୂତା ଏକ ସ୍ୱତନ୍ତ୍ର ପ୍ରକାର ପୁଷ୍ଟିସାର ବା ଫାଇବ୍ରୋଏନ୍ (Fibroin) ରେ ତିଆରି । ପ୍ରାୟ ୦.୦୧ ସେ.ମି. ବ୍ୟାସର ସୂତା ହାରାହାରି ୮୦ ଗ୍ରାମ୍ ପର୍ଯ୍ୟନ୍ତ ଓଜନିଆ ଜିନିଷକୁ ସମ୍ଭାଳିପାରେ ।

## ବୁଢ଼ିଆଣୀ ଜାଲର ପ୍ରକାର ଭେଦ

ବୁଢ଼ିଆଣୀ ଜାଲର ଗୋଟିଏ ନିର୍ଦ୍ଦିଷ୍ଟ ନକ୍ସା ଥାଏ । ଭିନ୍ନ ଭିନ୍ନ ଜାତିର ବୁଢ଼ିଆଣୀ ଭିନ୍ନ ନକ୍ସାରେ ତିଆରି କରନ୍ତି ତାଙ୍କର ଜାଲ । ଜାଲ ମଧ୍ୟରେ କେତେକ ମୁଖ୍ୟ ପ୍ରକାର ହେଉଛି ମାଛଧରା ଜାଲ, ସ୍ପ୍ରିଙ୍ଗ୍ ଜାଲ, ସୂତାଖିଅ ଜାଲ, ଡଙ୍ଗା ଜାଲ ଓ ଗୋଲାକାର ଜାଲ । ଏବେ ପ୍ରତ୍ୟେକ ପ୍ରକାରକୁ ଗୋଟିଏ ଗୋଟିଏ କରି ଦେଖିବା ।

### ୧. ମାଛଧରା ଜାଲ

ଆମେରିକାର ଡିନୋପିସ୍ ନାମକ ଏକ ପ୍ରକାର କାଠି ବୁଢ଼ିଆଣୀ (Stick Spider) ଏ ପ୍ରକାର ଜାଲ ବୁଣନ୍ତି । ଦେଖିବାକୁ ଆକାରରେ ଚତୁର୍ଭୁଜ ପରି ବା ଚାରିକୋଣିଆ । ସେଥିପାଇଁ ଏହାର ନାମ ହୋଇଛି 'ମାଛଧରା ଜାଲ' । ଏ ପ୍ରକାର ବୁଢ଼ିଆଣୀ ଜାଲଟି ତିଆରି କରି ଆଗ ଦୁଇଯୋଡ଼ା ଗୋଡ଼ଦ୍ୱାରା ଜାଲକୁ ଧରି ଶିକାରପାଇଁ ଅପେକ୍ଷା କରିଥାଏ ।

### ୨. ସ୍ପ୍ରିଙ୍ଗ୍ ଜାଲ

ଏ ଜାଲ ଦେଖିବାକୁ ତ୍ରିଭୁଜାକାର ସ୍ପ୍ରିଙ୍ଗ୍ ପରି । ମିଟିଓରସ ନାମକ ବୁଢ଼ିଆଣୀ ଏ ପ୍ରକାର ଜାଲ ତିଆରି କରନ୍ତି । ଏ ଜାଲର ମଝି ବା କେନ୍ଦ୍ରରୁ ଚାରିଟି ସୂତା ବାହାରିଥାଏ । ଏ ଚାରିଟି ସୂତା ପ୍ରାୟ ୧୦-୨୦ଟି ବୃତ୍ତାକାର ସୂତାଦ୍ୱାରା ଲାଗିଥାଆନ୍ତି । ବୁଢ଼ିଆଣୀ କେନ୍ଦ୍ରରେ ରହି ଅପେକ୍ଷା କରିଥାଏ ଶିକାରକୁ ।

### ୩. ସୂତାଖିଅ ଜାଲ

ଆଫ୍ରିକାର ମିଆଗ୍ରାମୋପେସ୍ *(Miagrammopes)* ନାମକ ବୁଢ଼ିଆଣୀ ଏ ଜାଲ କରିଥାଆନ୍ତି । ଏମାନେ ଗଛର ଦୁଇ ଶାଖାକୁ ଏକ ମିଟର ଲମ୍ବା ସୂତାଦ୍ୱାରା ଯୋଡ଼ି ସୂତାର ଗୋଟିଏ ମୁଣ୍ଡରେ ଅପେକ୍ଷା କରେ । ସୂତାର ମଝି ଅଂଶ ଅଠାଳିଆ ଥାଏ । ଏହି ଖିଏ ସୂତାର ଏକ ସ୍ୱତନ୍ତ୍ର ଗୁଣ ଅଛି । ଶିକାରଟି ଏହା ଉପରେ ପଡ଼ିଲେ ଏହା ଆପେ ଆପେ ବୁଢ଼ିଆଣୀ ପାଖକୁ ଟାଣିହୋଇ ଆସେ । ତେଣୁ ବୁଢ଼ିଆଣୀ ଖୁସିରେ ତାହାକୁ ଖାଏ ।

### ୪. ଡଙ୍ଗା ଜାଲ

କେତେକ ବୁଢ଼ିଆଣୀ ପାଣି ଉପରେ ଭାସୁଥିବା ପତ୍ରଗୁଡ଼ିକୁ ଯୋଡ଼ି ଭେଳା ବା ଡଙ୍ଗାପରି କରନ୍ତି । ଏହି ଭେଳା ଉପରେ ଲୁଚି ରହି ବୁଢ଼ିଆଣୀ ଶିକାର ଅପେକ୍ଷାରେ ଅନାଇ ରୁହନ୍ତି । ପାଣି ଉପରେ କୌଣସି କୀଟପତଙ୍ଗ ପଡ଼ିଲେ ହଠାତ୍ ଡେଇଁପଡ଼ି ଶିକାରକୁ ଡଙ୍ଗା ଉପରକୁ ନେଇଆସି ଆରାମରେ ଖାଆନ୍ତି । ପାଣି ଉପରେ ଡ଼ିଂଘୁଥିବା ପୋକଗୁଡ଼ିକୁ ଖାଇବାପାଇଁ କେତେକ ବୁଢ଼ିଆଣୀ ଏପରି ଜାଲ ତିଆରି କରିଥାଆନ୍ତି । ଏ ପ୍ରକାର ଜାଲ ମୁଖ୍ୟତଃ ଜଳଚର ବୁଢ଼ିଆଣୀମାନେ ତିଆରି କରିଥାଆନ୍ତି ।

### ୫. ଗୋଲାକାର ଜାଲ

ଏ ଜାଲର ଆକାର ଗୋଲ ହୋଇଥିବାରୁ ଏହାକୁ 'ଗୋଲାକାର ଜାଲ' ବା 'ବୃତ୍ତାକାର ଜାଲ' ବୋଲି କୁହାଯାଏ । ଏ ଜାଲ ତିଆରି କରିବାକୁ ହେଲେ ବୁଢ଼ିଆଣୀ ପ୍ରଥମେ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଡେଇଁ ବା ଖସିପଡ଼ି ତା' ପଛପାଖ ଗ୍ରନ୍ଥିରୁ ବାହାରୁଥିବା ସୂତାକୁ ଦୁଇସ୍ଥାନ ସହ ଯୋଡ଼ିଦିଏ । ବିଭିନ୍ନ ଦିଗରୁ ଆଠ ଦଶ ସ୍ଥାନ ଏଭଳି ଯୋଡ଼ିବା ପରେ ସେ ତା'ର ଜାଲଟିକୁ ଚାରି ସମାନ ଭାଗ କରେ । ଜାଲର କେନ୍ଦ୍ରରୁ ଚକର ଅର ପରି ୨୦-୪୦ଟି ସୂତା ଟାଣି ଜାଲ ତିଆରି କରେ ।

କେନ୍ଦ୍ର ବାଟ ଦେଇ ବାରମ୍ବାର ସୂତା ଯାଉଥିବାରୁ କେନ୍ଦ୍ର ଅଂଶଟି ମୋଟା ଓ ଶକ୍ତ ହୋଇଯାଏ । ଅରଗୁଡ଼ିକ ତିଆରି ହୋଇଗଲା ପରେ କେନ୍ଦ୍ର ଚାରିପଟେ ବୃତ୍ତାକାର ସୂତା ଟାଣେ । ଏହି ବୃତ୍ତାକାର ସୂତାଗୁଡ଼ିକ ଗୋଟିକ ପରେ ଗୋଟିଏ ବଡ଼ ହୋଇଥାଏ ଓ ପ୍ରତ୍ୟେକ ଅର ନିକଟରେ ଅଠାଳିଆ ଗଣ୍ଠି ପକାଇଥାଏ । ଏପରି ଜାଲର ଛାଞ୍ଚ ହୋଇଯିବା ପରେ ବୁଢ଼ିଆଣୀ ଖୁବ୍ ପତଳା ଅଠାଳିଆ ସୂତାରେ ଛାଞ୍ଚ ଭିତରେ ଥିବା ଫାଙ୍କଗୁଡ଼ିକ ପୂରଣ କରେ । ସୂତାଗୁଡ଼ିକ ଅଠାଳିଆ ହୋଇଥିବାରୁ ଶିକାର ସହଜରେ ଏହି ଜାଲରେ ଲାଖିଯାଏ । ଶିକାର କୀଟଟି ବେଶି ହଲିଲେ କିମ୍ବା ଜାଲର ମଝିଆଡ଼କୁ ଯିବାକୁ ଚେଷ୍ଟାକଲେ ବୁଢ଼ିଆଣୀ ଶିକାର ପଡ଼ିଥିବା ଅଂଶକୁ କାଟିଦିଏ ଏବଂ ଫାଙ୍କା ସ୍ଥାନରେ ନୂଆ ଜାଲ ତିଆରି କରେ ।




ବୁଢ଼ିଆଣୀଜାଲ ତିଆରିର ନକ୍ସା

## ୬. ଲମ୍ବା ସୂତା ଜାଲ

ଅନ୍ୟ ଏକପ୍ରକାର ବୁଢ଼ିଆଣୀ ଅଛନ୍ତି ଯେଉଁମାନେ ଜାଲପରି ଆକାର ତିଆରି କରନ୍ତି ନାହିଁ । ତାଙ୍କର ଜାଲ ଭିନ୍ନ ପ୍ରକାରର ସଂପୂର୍ଣ୍ଣ ଭାବରେ । ଏମାନେ ଗଛ ଉପରେ ଲମ୍ବା ଲମ୍ବା ସୂତା ତିଆରି କରି ତଳକୁ ଝୁଲି ପଡ଼ନ୍ତି । ଏହି ସୂତାରେ ଯେଉଁସବୁ ପୋକ ବା ଜୀବ ପଡ଼ିଯାଆନ୍ତି, ସେ ସବୁକୁ ଏ ବୁଢ଼ିଆଣୀମାନେ ଖାଆନ୍ତି । ଏହିପରି ହାଲୁକା ସୂତାରେ ଓହଳି ଆଉ ଏକ ଜାତିର ଛୋଟ ବୁଢ଼ିଆଣୀ ପବନରେ ଉଡ଼ି ଚାଲିଯାଏ । ଏହି ଲମ୍ବା ସୂତାଗୁଡ଼ିକ ପାରାଚୁଟ୍ ପରି ପବନରେ ଭାସୁଥାଏ ।

## ବୁଢ଼ିଆଣୀ ଜାଲର କରାମତି

ବୁଢ଼ିଆଣୀ ଜାଲର ମୁଖ୍ୟ କାର୍ଯ୍ୟ ହେଉଛି ଶିକାର ଧରି ଖାଇବା । ଜାଲଟି ତିଆରି କରିସାରି ବୁଢ଼ିଆଣୀଗୁଡ଼ିକ ଚୁପ୍‌ଚାପ୍ ଅପେକ୍ଷା କରିଥାଆନ୍ତି କେତେବେଳେ ଶିକାରଟି ପଡ଼ିବ ଓ ସେମାନେ ସାଙ୍ଗେ ସାଙ୍ଗେ ଖାଇବେ । ବୁଢ଼ିଆଣୀ ଜଗତର ଅନେକ ଜାଲ ତିଆରି କଲେ ବି କେତେକ ଜାତିର ବୁଢ଼ିଆଣୀ ଆଦୌ ଜାଲ ବୁଣନ୍ତି ନାହିଁ । ଆମେରିକାର ମାଇଗେଲ ନାମକ ବୁଢ଼ିଆଣୀ ଏପରି ଜାଲ ନ ବୁଣି ଗଛ ଆଡୁଆଳରୁ ଏକାଥରକେ ଶିକାର ଉପରକୁ ହିଂସ୍ର ଜନ୍ତୁପରି ଲମ୍ଫମାରି ଛୋଟ ଛୋଟ ପକ୍ଷୀମାନଙ୍କୁ ମାରି ଖାଇଯାଆନ୍ତି ।

ଏ ସୂତା ଆମପାଇଁ ବହୁତ କାର୍ଯ୍ୟରେ ଲାଗିପାରୁଛି । କେତେକଙ୍କ ସୂତାରୁ କୃତ୍ରିମ ହୃତ୍‌ପିଣ୍ଡ ଭାଲ୍‌ଭ, କୃତ୍ରିମ ଶିରାପ୍ରଶିରା ଓ ଅନ୍ୟାନ୍ୟ ସୂକ୍ଷ୍ମ ଶଲ୍ୟ ଉପଯୋଗୀ ଉପକରଣ ତିଆରି ହେବାପାଇଁ ଚେଷ୍ଟା ଚାଲିଛି । ସମୟ ଆସିବ, ଯେତେବେଳେ ଏହି ଜାଲ ଆଉ କିଛି ଅଧିକ କାର୍ଯ୍ୟରେ ନିଶ୍ଚୟ ଲାଗିପାରିବ । ଯାହାହେଲେ ବି ଏହି ଜାଲ ଯୋଗୁଁ ହିଁ ବୁଢ଼ିଆଣୀଗୁଡ଼ିକ ସାହିତ୍ୟ, ଇତିହାସ, ଗଳ୍ପ, କବିତା ଓ ସଂସ୍କୃତ ତଥା ଇଂରାଜୀ ସାହିତ୍ୟରେ ସ୍ଥାନ ପାଇଛି । ଜାଲ ଯୋଗୁଁହିଁ ବିଭିନ୍ନ କ୍ଷେତ୍ରରେ ରହି ଶିକାର କରିବା ଫଳରେ ଅନିଷ୍ଟକାରୀ କୀଟମାନେ ଦମନ ହୋଇପାରୁଛନ୍ତି । ତେଣୁ ପ୍ରତ୍ୟକ୍ଷରେ ଓ ପରୋକ୍ଷରେ ଏ ବୁଢ଼ିଆଣୀ ଆମର ଉପକାରୀ ଏବଂ ସୁଦକ୍ଷ ବିନ୍ଧାଣି ଓ ଶିକାରୀ ଭାବରେ ଗଣ୍ୟ । ଆମେ ଘୃଣା ନ କରି ସେମାନଙ୍କ ବଂଶରକ୍ଷା ଓ ବଂଶବୃଦ୍ଧିରେ ସାହାଯ୍ୟ କଲେ ଆମ ପରିବେଶର ଭାରସାମ୍ୟ ଓ ସନ୍ତୁଳନ ଠିକ୍ ରହିବ । ପରିବେଶକୁ ରାସାୟନିକ ଦ୍ରବ୍ୟ ପ୍ରୟୋଗ ଠାରୁ ଦୂରରେ ରଖିପାରିବା ଓ ସୁସ୍ଥ ରହିପାରିବା ।




ବୃତ୍ତାକାର ଜାଲ ବୁଢ଼ିଆଣୀର ଜାଲ ପ୍ରସ୍ତୁତି ।

# ବୁଢ଼ିଆଣୀ ସୂତା : ସମସ୍ତଙ୍କ କଥା

ବୁଢ଼ିଆଣୀକୁ କିଏ ଜାଣିଥାଆନ୍ତୁ ବା ଜାଣି ନ ଥାଆନ୍ତୁ ଅଥବା ଦେଖିଥାଆନ୍ତୁ ବା ଦେଖି ନ ଥାଆନ୍ତୁ, ସମସ୍ତେ ଗୋଟିଏ ଜିନିଷ ଲାଗି ଏହାକୁ ଭଲରୂପେ ଚିହ୍ନିଥାଆନ୍ତି । ସେଇଟି ହେଉଛି 'ବୁଢ଼ିଆଣୀ ଜାଲ' । ଏମିତି ଜାଲକୁ ପ୍ରାୟ ଆବାଳବୃଦ୍ଧବନିତା ଦେଖିଥାଆନ୍ତି ବାଡ଼ିବଗିଚାର ଗଛଗୁଡ଼ିକରେ । ଶୀତଦିନ ସକାଳେ ବଗିଚାର ଗଛଗୁଡ଼ିକରେ ଜାଲ ତିଆରି କରିଥିବା ବୁଢ଼ିଆଣୀମାନଙ୍କର ଜାଲରେ କାକର ପଡ଼ି ବୁନ୍ଦା ବୁନ୍ଦା ହୋଇଯାଇଥାଏ । ଆଉ ସୂର୍ଯ୍ୟକିରଣ ପଡ଼ିଲେ ଦେଖାଯାଉଥାଏ ଠିକ୍ ମୁକ୍ତା ବିନ୍ଦୁ ପରି । ଲାଗେ, ସତେଯେପରି ସୂତା ଦେହରେ କିଏ ମୁକ୍ତାଗୁଡ଼ିଏ ଖଞ୍ଜି ଦେଇଛି ବୋଲି । ଏମିତି ଚିକ୍‌ଚିକ୍ କରୁଥିବା ଜିନିଷରୁ ମୁଣ୍ଡକୁ ହଠାତ୍ ଢୁକିଯାଏ ଯେ ସତରେ ବୁଢ଼ିଆଣୀ ଆମ ବାଡ଼ିବଗିଚାରେ ଅଛି ବୋଲି । ମୋଟାମୋଟି କହିବାକୁ ଗଲେ ବୁଢ଼ିଆଣୀର ପରିଚୟ ତା'ର ଜାଲରୁ । ତା' ଛଡ଼ା କବି, ଭାବୁକ, ଗାଳ୍ପିକ, ଔପନ୍ୟାସିକ, ଐତିହାସିକ ଓ ଗୀତିକାର ଆଦି ବ୍ୟକ୍ତିବିଶେଷ ଏ ଜାଲ ବିଷୟରେ କେତେ କଥା ଲେଖିଯାଇଛନ୍ତି କହିଲେ ନ ସରେ ।

## ବୁଢ଼ିଆଣୀ ସୂତାର ଗୁରୁତ୍ୱ

ଏକ ସମୟର ଘଟଣା । ଏକଥା ଥରେ ମହମ୍ମଦ ତାଙ୍କ ଧର୍ମ (ମୁସଲମାନ ଧର୍ମ) ପ୍ରଚାର କରିବାକୁ ଆଗେଇ ଆସିଥାଆନ୍ତି । ଏମିତି ଧର୍ମପ୍ରଚାର ସମୟରେ ତାଙ୍କର ବିରୋଧୀ ଲୋକମାନେ ତାଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ହୁଅନ୍ତି । ଶତ୍ରୁକବଳରୁ ରକ୍ଷା କରିବାପାଇଁ ନିଜକୁ ନିଜେ କିଛି ଉପାୟ କରିବା ତ ସବୁ ପ୍ରାଣୀର ସ୍ୱଭାବ । ମହମ୍ମଦ ବା ବାଦ୍ ଯିବେ କିପରି ? ତେଣୁ ବିରୋଧୀ ଲୋକଙ୍କ ଆକ୍ରମଣରୁ ନିଜକୁ ବଞ୍ଚାଇବାପାଇଁ କିଛି ସମୟ ଗୋଟିଏ ଗୁମ୍ଫାରେ ଅଟକି ଯାଇଥିଲେ । ବାଟରେ ଥିବା ଏହି ଗୁମ୍ଫାଟିର ମୁହଁଟି ସେ ସମୟରେ ବୁଢ଼ିଆଣୀ ଜାଲଦ୍ୱାରା ଆବୃତ ହୋଇଯାଇଥିଲା । ବୁଢ଼ିଆଣୀର ଏ ସୂତାଦ୍ୱାରା ଛନ୍ଦି ହୋଇଥିବା ଗୁମ୍ଫା ମୁହଁଟିକୁ ଦେଖି ମହମ୍ମଦଙ୍କ ବିରୋଧୀ ଲୋକମାନେ ଗୁମ୍ଫା ଭିତରକୁ ନ ଯାଇ ଫେରିଯାଇଥିଲେ । କାରଣ ବିରୋଧୀ ଲୋକମାନେ ହଠାତ୍ ଦେଖି ଭାବିଲେ ଗୁମ୍ଫା ଭିତରକୁ କେହି ଯାଇ ନାହାନ୍ତି । ଯାଇଥିଲେ ଏ ଜାଲ ତ ନ ଥାଆନ୍ତା । ଜାଲ ବା ସୂତାଗୁଡ଼ିକ ଥିବାରୁ କେହି ଯାଇ ନ ଥିବାର ଅନୁମାନ ସେମାନେ କରିଥିଲେ । ମାତ୍ର ଘଟଣାଟି ଏପରି ହୋଇଥିଲା ଯେ ମହମ୍ମଦ ଗୁମ୍ଫା ଭିତରକୁ ଚାଲିଯିବା ପରେ ବୁଢ଼ିଆଣୀ ଗୁମ୍ଫା ମୁହଁଟିକୁ ଜାଲରେ ଛନ୍ଦି ପକାଇଥିଲା । ତେଣୁ ମହମ୍ମଦ ବିରୋଧୀମାନଙ୍କ କବଳରୁ ରକ୍ଷା ପାଇଥିଲେ । ଅର୍ଥାତ୍ ବୁଢ଼ିଆଣୀ ବା ବୁଢ଼ିଆଣୀ ଜାଲ ମହମ୍ମଦକୁ ବହୁତ ସାହାଯ୍ୟ କରିଥିଲା ବଞ୍ଚିବାପାଇଁ ।

## ବୁଢ଼ିଆଣୀ ସୂତା କେଉଁଠୁ ଆସେ ?

ସତରେ ମନକୁ ହଠାତ୍ ପ୍ରଶ୍ନ ଆସିବା ସ୍ୱାଭାବିକ ଯେ ଏ ବୁଢ଼ିଆଣୀ ସୂତା କିପରି ଓ କେଉଁଠାରୁ ଆସେ ? କେମିତି ସେ ବିନ୍ଧାଣି ପରି ସୂତାକୁ ସୂତା ଛନ୍ଦି ଜାଲଟିଏ ପ୍ରସ୍ତୁତ କରେ ? ବୁଢ଼ିଆଣୀର ପେଟଟି ଗୋଲାକାର । ଦେଖିବାକୁ ଗୋଟିଏ ଅଣ୍ଡାପରି ଓ ହାତକୁ ଲାଗେ ଅତି ନରମ । ଏହି ପେଟ ମଧ୍ୟରେ ତିନିଯୋଡ଼ା ବା ଚାରିଯୋଡ଼ା ଜାଲଗ୍ରନ୍ଥି (Spinneret) ରହିଥାଏ । ଅଧିକାଂଶ ବୁଢ଼ିଆଣୀଙ୍କ ପେଟ ମଧ୍ୟରେ ତିନିଯୋଡ଼ା ଜାଲଗ୍ରନ୍ଥି ଦେଖିବାକୁ ମିଳେ । ତେବେ ଚାରିଯୋଡ଼ା ଜାଲଗ୍ରନ୍ଥିରୁ ବେଶି ଜାଲଗ୍ରନ୍ଥି କୌଣସି ବୁଢ଼ିଆଣୀ ଶରୀରରେ ଦେଖାଯାଏ ନାହିଁ ବୋଲି ଜଣାଯାଏ । ପେଟ ପାଖ ଏ ଜାଲଗ୍ରନ୍ଥିରୁ ତରଳ ପଦାର୍ଥର ସୂତା ବୁଢ଼ିଆଣୀ ନିର୍ଗତ କରି ତା'ର ଜାଲଟିକୁ ପ୍ରସ୍ତୁତ କରେ । ଠିକ୍ ସୂତାକଳରେ ସୂତା




ସଂପୂର୍ଣ୍ଣ ତିଆରି ବୁଢ଼ିଆଣୀ ଜାଲ

ବାହାରିବା ପରି ଏହା ଗ୍ରନ୍ଥିରୁ ସୂତା ସେ ଅବିରତ ବାହାର କରି ଚାଲିଥାଏ ଜାଲଟିକୁ ସାରିବା ପର୍ଯ୍ୟନ୍ତ । ରେଶମ ପୋକ ତା'ର ପାଟିରୁ ଲାଳ ନିସ୍ସୃତ କରି ରେଶମ କୋଷା ତିଆରି କରିଥାଏ । ମାତ୍ର ବୁଢ଼ିଆଣୀଗୁଡ଼ିକ ପାଟିରୁ ନିସ୍ସୃତ ନ କରି ପେଟପାଖ ରେଶମଗ୍ରନ୍ଥିରୁ ସୂତା ନିର୍ଗତ କରିଥାଏ । ତେବେ ମୋଟାମୋଟି କହିବାକୁ ଗଲେ ରେଶମ ପୋକ ଓ ବୁଢ଼ିଆଣୀମାନଙ୍କ ସୂତାକୁ ରେଶମ ସୂତା ବୋଲି କୁହାଯାଇପାରେ ।

### ବୁଢ଼ିଆଣୀ ସୂତାର ପ୍ରକୃତି

ପେଟ ପାଖରୁ ଲାଳ ବା ସୂତା ବାହାର କରି ଜାଲ ପ୍ରସ୍ତୁତ କରିବା ଅଧିକାଂଶ ବୁଢ଼ିଆଣୀମାନଙ୍କର ଧର୍ମ । ଜାଲହିଁ ସେମାନଙ୍କର ଘର କହିଲେ ଅତ୍ୟୁକ୍ତି ହେବ ନାହିଁ । ଭିନ୍ନ ଭିନ୍ନ ବୁଢ଼ିଆଣୀଙ୍କର ଜାଲ ବା ଘର ମଧ୍ୟ ବିଭିନ୍ନ ନକ୍ସାର । ଏପରିକି ଜାଲ ତିଆରି ସ୍ଥାନ ବି ଭିନ୍ନ ଭିନ୍ନ । କିଏ ଜଳ ମଧ୍ୟରେ ତ କିଏ ଗଛ ଡାଳରେ, କିଏ ଘର କୋଣମାନଙ୍କରେ ଅଥବା ଆଉ କେଉଁମାନେ ମାଟିତଳେ ତିଆରି କରନ୍ତି ସେମାନଙ୍କର ଜାଲ । ବୁଢ଼ିଆଣୀମାନଙ୍କର ସୂତା ଅତି ସରୁ । କଳ୍ପନା କରିହେବନି ଯେ ଏହାର ସୂତା ସେତିକି ମୋଟାର ଇସ୍ପାତ ବା ଷ୍ଟିଲ (Steel) ତାର ଠାରୁ ଅଧିକ ଟାଣ ବା ଶକ୍ତ । ଏ ସୂତାର ସୂକ୍ଷ୍ମତା ମଣିଷ ଶରୀର କେଶଠାରୁ ଅଧିକ ସୂକ୍ଷ୍ମ । କର୍ଣ୍ଣେଲ ବିଶ୍ୱବିଦ୍ୟାଳୟ (Cornell University)ର ଛାତ୍ରମାନେ କହନ୍ତି ଯେ ବୁଢ଼ିଆଣୀମାନେ ସାତ ପ୍ରକାର ସୂତା ବାହାର କରନ୍ତି । ଆଉ ଏ ସାତ ପ୍ରକାର ରେଶମ ସୂତା ସେମାନଙ୍କ ଜାଲର ବିଭିନ୍ନ ଅଂଶ ତିଆରିରେ ଲାଗିଥାଏ । ଏ ବିଶ୍ୱବିଦ୍ୟାଳୟର ମାଇକାଲ୍ (Mical) ନାମକ ଛାତ୍ର-ଗବେଷକ କୁହନ୍ତି ଯେ ବୁଢ଼ିଆଣୀ ହେଉଛି ଏକ କ୍ଷୁଦ୍ର ଜୈବ କାରଖାନା, ଯେଉଁ କାରଖାନାରୁ କି ଜୈବ ସୂତା ନିର୍ଗତ ହୋଇଥାଏ । ଏ ସୂତା ପରିପାର୍ଶ୍ୱ ଉପକାରୀ (Ecofriendly) ।

ବର୍ତ୍ତମାନ ଦେଖାଯାଇଛି ଯେ ଅତି ତନ୍ତୁ (Super fibre)ର ଚାହିଦା ବେଶି । କାରଣ ଏ ପ୍ରକାର ସୂତାର ଶକ୍ତି ବେଶି ବା ସୂତାଟି ଅତି ଶକ୍ତ । ଅବଶ୍ୟ ଏ ଅତି ତନ୍ତୁ ଏକପ୍ରକାର ରାସାୟନିକ ପ୍ରକ୍ରିୟାକରଣ (Petro-chemical Processing) ଦ୍ୱାରା ମିଳିଥାଏ । ଏହା ପରିବେଶ ସହାୟକ ନୁହେଁ । ମାତ୍ର କର୍ଣ୍ଣେଲ ବିଶ୍ୱବିଦ୍ୟାଳୟର ବୈଜ୍ଞାନିକମାନେ ଏକ ପଦକ୍ଷେପ ନେବାରେ ଆଗେଇ ଚାଲିଛନ୍ତି ପରିବେଶ ସହାୟକ



ଗୋଟିଏ ବୃତ୍ତାକାର ଜାଲ ବୁଢ଼ିଆଣୀର ଜାଲ ତିଆରି ପ୍ରଣାଳୀ

ଅତି ତନ୍ତୁ ବା ଶକ୍ତ ତନ୍ତୁ ବାହାର କରିବାରେ । ଅର୍ଥାତ୍ ସ୍ୱର୍ଣ୍ଣ ବୃତ୍ତ ବୁଢ଼ିଆଣୀ (Golden Orb Spider) ନାମକ ବୁଢ଼ିଆଣୀର ଶକ୍ତ ସୂତା ପରି ଅତି ଶକ୍ତ ପ୍ରାକୃତିକ ତନ୍ତୁ ବା ସୂତା ବାହାର କରିବାହିଁ ଏମାନଙ୍କର ଲକ୍ଷ୍ୟ ।

ଆହୁରି ଏକ ମଜା କଥା ହେଉଛି ଗବେଷକଗଣ ବୁଢ଼ିଆଣୀ ସୂତା ପରି ସୂତା ବାହାର କରିବାରେ ଯେତେ ଉଦ୍ୟତ ହୁଅନ୍ତୁ କି ନ ହୁଅନ୍ତୁ ସେମାନେ ଏ ସୂତା ତଥା ସୂତା ପ୍ରସ୍ତୁତିର ଆଣବିକ ରହସ୍ୟ

ଉନ୍ମୋଚନ କରିବାରେ ବିଶେଷ ଆଗ୍ରହୀ । କାରଣ ଏ ସୂତାର ରହସ୍ୟ, ପ୍ରକୃତି ଓ ଶରୀରରେ ପ୍ରସ୍ତୁତି ସଂପର୍କରେ ଆଜି ବି ବୈଜ୍ଞାନିକଗଣ ସନ୍ଦିହାନ ।

## ବୁଢ଼ିଆଣୀ ସୂତାର ମହତ୍ତ୍ୱ

ବୁଢ଼ିଆଣୀ ସୂତା ବାସ୍ତବିକ୍ ଖୁବ୍ ଟାଣ । ମୁଖ୍ୟତଃ ସୂତା ଶତ୍ରୁକୁ ଧରି ବୁଢ଼ିଆଣୀକୁ ଖାଦ୍ୟ ସଂଗ୍ରହରେ ସାହାଯ୍ୟ କରେ । ନିଜ ବ୍ୟବହାର ବ୍ୟତୀତ ଏହାକୁ ମନୁଷ୍ୟ ଅନେକ କାର୍ଯ୍ୟରେ ଲଗାଇ ପାରିଛି । କେତେକଙ୍କ ସୂତାରୁ କୃତ୍ରିମ ହୃତ୍‌ପିଣ୍ଡ ଭାଲ୍‌ଭ (Artificial Heart Valve), କୃତ୍ରିମ ଶିରାପ୍ରଶିରା ବା ରକ୍ତବାହୀ ନଳୀ ଏବଂ ଅନ୍ୟାନ୍ୟ ସୂକ୍ଷ୍ମ ଶଲ୍ୟ ଉପଯୋଗୀ ଉପକରଣ ପ୍ରସ୍ତୁତ କରିବାପାଇଁ ଚେଷ୍ଟା ଅବ୍ୟାହତ ରହିଛି । ଏହାର ଶକ୍ତ ପ୍ରକୃତି ଯୋଗୁଁ ଆଉ କି କି କାର୍ଯ୍ୟରେ ଲଗାଯାଇପାରିବ, ବୈଜ୍ଞାନିକମାନେ ସେଥିପାଇଁ ଚିନ୍ତିତ । ଯାହାହେଉ, ବିଭିନ୍ନ ପ୍ରକାର ବୁଢ଼ିଆଣୀ ତାଙ୍କ ପେଟରୁ ଏ ସୂତା ବାହାର କରି ବିଭିନ୍ନ ପ୍ରକାର ଜାଲ ଅର୍ଥାତ୍ ମାଛଧରା ଜାଲ, ସ୍ପ୍ରିଂ ଜାଲ, ସୂତାଖିଅ ଜାଲ, ଓଙ୍ଗା ଜାଲ, ଗୋଲାକାର ଜାଲ ଓ ଲମ୍ୱା ସୂତା ଜାଲ ଆଦି ପ୍ରସ୍ତୁତ କରିଥାଆନ୍ତି । ବିଭିନ୍ନ ନକ୍‌ସାର ଜାଲ ଦେଖିଲେ ବିଶ୍ୱାସ କରିହୁଏନି ଯେ କେଉଁ ବିନ୍ଧାଣି ଏମାନଙ୍କୁ ଏ କୌଶଳ ଶିଖାଇଲା ଏପରି ତିଆରି କରିବାକୁ ! ଯାହାହେଉ ଆଶା କରାଯାଏ ଯେ ଆମ ଜୀବବିଜ୍ଞାନୀମାନେ ଏ ସୂତା ଉପରେ ଅଧିକରୁ ଅଧିକ ଗବେଷଣା କରି ଏହାର ସୁବିନିଯୋଗ କିପରି ହୋଇପାରିବ ଏବଂ ଆବଦ୍ଧ ଅବସ୍ଥାରେ ରଖି ବୁଢ଼ିଆଣୀମାନଙ୍କୁ କିପରି ଚାଷ କରାଯାଇ ସୂତା ସଂଗ୍ରହ କରାଯାଇପାରିବ, ସେ ଦିଗରେ ଆମ ସମସ୍ତଙ୍କୁ ଆଲୋକିତ କରିପାରିବେ । ଧନ୍ୟ ସେ କ୍ଷୁଦ୍ର ବିନ୍ଧାଣି ! ଧନ୍ୟ ସେ ବୁଢ଼ିଆଣୀ ! ଧନ୍ୟ ତା'ର ଜାଲ ତିଆରି ଠାଣି !!!



ବୃତ୍ତାକାର ଜାଲ ବୁଢ଼ିଆଣୀର ସୂତା ଓ ବିଚିତ୍ର ଜାଲ ।

# ବୁଢ଼ିଆଣୀର ରୀତି, ନୀତି, ଗତି, ପ୍ରୀତି ଓ ସ୍ଥିତି

## ପରିବେଶ ନିୟନ୍ତ୍ରଣକାରୀ ଭାବେ ବୁଢ଼ିଆଣୀ

ସମଗ୍ର ପୃଥିବୀରେ ଅନ୍ତତଃ ପଚାଶ ହଜାର ବିଭିନ୍ନ ପ୍ରକାର ବୁଢ଼ିଆଣୀ ଥିବାର ଜଣାଯାଏ । ସେମାନଙ୍କ ଜୀବନକାଳ ପ୍ରାୟ କୋଡ଼ିଏ ବର୍ଷ । ଆଣ୍ଟାର୍କଟିକା ମହାଦେଶକୁ ବାଦ୍‌ଦେଲେ ଅନ୍ୟ ସବୁ ମହାଦେଶରେ ଓ ପ୍ରତ୍ୟେକ ପ୍ରକାର ସ୍ଥାନରେ ଦେଖାଯାଆନ୍ତି । ସେମାନେ ସମସ୍ତେ ଭକ୍ଷକ ଅର୍ଥାତ୍ ଅନ୍ୟ ପ୍ରାଣୀମାନଙ୍କୁ ଶିକାର କରି ଖାଇବା ସେ ନଙ୍କ ସ୍ୱଭାବ । ଟାରାଣ୍ଟୁଲା ପରି କେତେକ ବୁଢ଼ିଆଣୀ ବଡ଼ ବଡ଼ ପ୍ରାଣୀ ଅର୍ଥାତ୍ ମୂଷା, ପକ୍ଷୀ ଓ ସରୀସୃପ ପ୍ରାଣୀ ଆଦି ଶିକାର କରିବାର ଜଣାଯାଏ । ସମୟ ସମୟରେ ସେମାନେ ପରସ୍ପରକୁ ମଧ ଖାଇଥାଆନ୍ତି ! ହେଲେ ବି ସେମାନଙ୍କ ମୁଖ୍ୟ ଖାଦ୍ୟ କୀଟପତଙ୍ଗାଦି ପାଣୀ । ଏତେ ପରିମାଣରେ କୀଟ୍‌ମାନଙ୍କୁ ଏମାନେ ଭକ୍ଷଣ କରିଥାଆନ୍ତି ଯେ ସେମାନେ ପରିବେଶର ଅନେକ ଅନିଷ୍ଟକାରୀ କୀଟ ଦମନ କରି କୀଟ ନିୟନ୍ତ୍ରଣରେ ସହାୟକ ହୋଇଥାଆନ୍ତି । ଏକ ବର୍ଗ ୟାର୍ଡ଼ ଘାସପଡ଼ିଆରେ ହାରାହାରି ପାଞ୍ଚଶହ ବୁଢ଼ିଆଣୀ ଥାଇପାରନ୍ତି ଏବଂ ବର୍ଷକୁ ପ୍ରାୟ ହଜାର ହଜାର କୀଟମାନଙ୍କୁ ମାରିବା ହିଁ ଏମାନଙ୍କର ଏକ ସାଧାରଣ ପ୍ରାକୃତିକ ଘଟଣା । ମୁଖ୍ୟତଃ ସେମାନେ ପ୍ରସ୍ତୁତ କରୁଥିବା ରେଶମ ସୂତାର ଜାଲରେ ଶିକାରଗୁଡ଼ିକୁ କବଳିତ କରିଥାଆନ୍ତି ଠିକ୍ ଫାଶ ପକାଇ ଶିକାରୀ ପକ୍ଷୀ ଧରିବା ପରି । ସେମାନଙ୍କ ପ୍ରସ୍ତୁତ ଜାଲ ବିଭିନ୍ନ କାର୍ଯ୍ୟ ଅର୍ଥାତ୍ ଜାଲ ତିଆରି କରି ଘର ଭାବରେ ସେଠାରେ ଅବସ୍ଥାନ କରିବା, ଉପରକୁ ଚଢ଼ିବା ନିମିତ୍ତ ଏକ ନିରାପଦ ରାସ୍ତା ଭାବରେ ବ୍ୟବହାର କରିବା, ସୂତା ଉପର ଦେଇ ବାୟୁରେ ଦୂର ସ୍ଥାନକୁ ଗତି କରିବା, ସୁଡ଼ଙ୍ଗ ଘର ଚାରିପଟେ ରେଶମ ଆବୃତ୍ତ କରିବା, ରେଶମ କୋଷା ମଧରେ ନିରାପଦ ପାଇଁ ଅଣ୍ଡା ଜମା କରି ରଖିବା ଏବଂ ବିଭିନ୍ନ ସୂତ୍ର ମାଧ୍ୟମରେ ଶିକାରଗୁଡ଼ିକୁ ଧରିବା ଆଦି ସମ୍ପନ୍ନ କରିଥାଆନ୍ତି । ଏମାନଙ୍କର ରେଶମ ସୂତା ହିଁ ଏ ସୂତା ମୋଟର ଇସ୍ପାତ ତାର (Steel Wire)ଠାରୁ ଅଧିକ ଶକ୍ତ ।

## ଆଦ୍ୟସଂଦଂଶପଦ ଓ ମାଢ଼ି

ବୁଢ଼ିଆଣୀଗୁଡ଼ିକ ଶିକାରୀ ହେତୁ ପ୍ରକୃତି ତା ଦେହରେ ବିଷ ରଖିଦେଇଛି । ଶିକାରକୁ ମାରିବା ପାଇଁ ବା ଅବାକ୍ କରିବା ନିମିତ୍ତ ଏମାନେ ବିଷ ପ୍ରୟୋଗ କରନ୍ତି । ଚଢ଼େଇଖିଆ ବୁଢ଼ିଆଣୀ ଓ ସେମାନଙ୍କ ସମ୍ପର୍କୀୟ ବୁଢ଼ିଆଣୀମାନଙ୍କର ବେଶ୍ ବଡ଼ ତଳ ମୁହାଁ, ମୁନିଆ ଏକ ଯୋଡ଼ା ଆଦ୍ୟସଂଦଂଶପଦ ବା ବିଷ ଦାନ୍ତ ବା ଦଂଶକ (Chelicera ବା Fang) ରହିଥାଏ । ଶିକାର ପାଖକୁ ଆସିବା ମାତ୍ରେ ଠିକ୍ ସାପ ଫଣା ପରି ସେମାନେ ମୁଣ୍ଡକୁ ଉପରକୁ ଟେକି ଶିକାର ଶରୀରକୁ ଫୋଡ଼ି ବିଷ ପ୍ରୟୋଗ କରନ୍ତି । ଅନ୍ୟସବୁ ବୁଢ଼ିଆଣୀମାନଙ୍କର ଏହି ବିଷଦାନ୍ତ ଛୋଟ ଓ ସେଗୁଡ଼ିକ ମୁଖ୍ୟତଃ ସାଧାରଣ ଫୋଡ଼ିବା କାର୍ଯ୍ୟରେ ଲଗାଇଥାଆନ୍ତି, ବିଷ ମଧ ଢାଳନ୍ତି ଏବଂ ଦରକାର ପଡ଼ିଲେ ପରସ୍ପରକୁ ତା ସାହାଯ୍ୟରେ କାମୁଡ଼ାକାମୁଡ଼ି କରିଥାନ୍ତି । ସାପ ବିଷ ଦାନ୍ତରୁ ମୁଣ୍ଡ ମଧରେ ଥିବା ବିଷଗ୍ରନ୍ଥିରୁ ବିଷ ଝରି ଦାନ୍ତ ମଧ ଦେଇ ଆସିବା ପରି ବୁଢ଼ିଆଣୀର ବିଷ ଝରି ଆସିଥାଏ । ଏହାର କାର୍ଯ୍ୟ ଠିକ୍ ଇଂଜେକ୍‌ସନ୍ ଛୁଞ୍ଚି ପରି । ଆଦ୍ୟସଂଦଂଶପଦ ବା ବିଷଦାନ୍ତ ପାଖରେ ଆହୁରି ଅନେକ ଛୋଟ ଛୋଟ ଦାନ୍ତ ମଧ ରହିଥାଏ ।

ବୁଢ଼ିଆଣୀମାନେ ତରଳ ଆକାରରେ ଖାଦ୍ୟ ଖାଇଥାଆନ୍ତି । କଙ୍କଡ଼ା ବୁଢ଼ିଆଣୀ ପରି କେତେକ ବୁଢ଼ିଆଣୀ ତାଙ୍କ ଶରୀରର ପାଚକ ରସକୁ ବିଷଦାନ୍ତରୁ

ଝରାଇ ଶିକାର ଶରୀର ମଧ୍ୟକୁ ପ୍ରୟୋଗ କରିବା ପରେ ସେ ପାଚକ ଖାଦ୍ୟ ବା ପରିପାକ ଖାଦ୍ୟ ଅର୍ଥାତ୍ ଶିକାର ଶରୀର ମଧ୍ୟର ରସକୁ ଶୋଷି ଶୋଷି ଖାଆନ୍ତି । ଅନ୍ୟକେତେକ ବୁଢ଼ିଆଣୀ ମାଢ଼ିରେ ଥିବା ଦାନ୍ତ ପରି ଆକାର ଦ୍ଵାରା ଶିକାରମାନଙ୍କୁ ଚୋବେଇ ଚୋବେଇ ରସ ଶୋଷି ଖାଇଥାଆନ୍ତି । ଏପରି ଚୋବେଇବା ସମୟରେ ସେମାନେ ପାଚକ ରସକୁ ଶିକାର ଉପରକୁ ନିସୃତ କରି ଶିକାରର ଅନ୍ତଃ ଶରୀର ତରଳ ହେବା ପରେ ତାହାକୁ ଶୋଷି ଶୋଷି ଖାଆନ୍ତି ଓ ଶେଷରେ ଶିକାର ଶରୀରର ଖୋଳପା ବାଦ ପଡ଼ିଥାଏ । ମୁଣାଜାଲ ବୁଢ଼ିଆଣୀମାନଙ୍କର ସଂଦଶକ ଖୁବ୍ ବଡ଼ ବଡ଼ । ସେଗୁଡ଼ିକୁ ସେମାନେ ଗର୍ତ୍ତ ଖୋଳିବା, ଆତ୍ମଗୋପନ କରିବା, ଶତ୍ରୁ ଶରୀରକୁ ଫୋଡ଼ିବା, ବିଷ ପ୍ରୟୋଗ କରିବା ଓ ଶତ୍ରୁକୁ ଧରିବା ଆଦି କାର୍ଯ୍ୟରେ ଲଗାଇଥାଆନ୍ତି । ଚଢ଼େଇଖିଆ ବୁଢ଼ିଆଣୀର ସଂଦଶକ ଦୁଇଟି ମୁହଁ ତଳକୁ ରହିଥିବା ବେଳେ ଡିଆଁ ବୁଢ଼ିଆଣୀମାନଙ୍କର ସଂଦଶକ ଦୁଇଟି ଦୁଇ ପାର୍ଶ୍ଵରୁ ମଝିକୁ ମୁହାଁମୁହିଁ ହୋଇ ରହିଥାଆନ୍ତି । ତେଣୁ ଚଢ଼େଇଖିଆ ବୁଢ଼ିଆଣୀର ଉପରୁ ତଳକୁ କାର୍ଯ୍ୟ କଲାବେଳେ ଡିଆଁ ବୁଢ଼ିଆଣୀର ପାର୍ଶ୍ଵରୁ କାର୍ଯ୍ୟ କରିଥାଏ ।

## ପୁରୁଷ ଓ ସ୍ତ୍ରୀ ବୁଢ଼ିଆଣୀ

ପୁରୁଷ ଓ ସ୍ତ୍ରୀ ବୁଢ଼ିଆଣୀ ଆକାରରେ ଭିନ୍ନ ଭିନ୍ନ । ପୁରୁଷ ବୁଢ଼ିଆଣୀର ଶରୀର ହିଁ ସ୍ତ୍ରୀ ଅପେକ୍ଷା ଛୋଟ; ମାତ୍ର ପୁରୁଷର ଗୋଡ଼ଗୁଡ଼ିକ ସ୍ତ୍ରୀ ଅପେକ୍ଷା ବଡ଼ ବଡ଼ । ବଗିଚା ବୁଢ଼ିଆଣୀ କ୍ଷେତ୍ରରେ ସ୍ତ୍ରୀ ହିଁ ପୁରୁଷ ସାଥୀଠାରୁ ପ୍ରାୟ ଦେଢ଼ଗୁଣ ବଡ଼ ଓ ବେଶ୍ ମୋଟା । ଆଉ କେତେକ ପ୍ରଜାତିର ସ୍ତ୍ରୀ ଓ ପୁରୁଷ ବୁଢ଼ିଆଣୀର ଆକାରରେ ଏତେ ପାର୍ଥକ୍ୟ ପରିଲକ୍ଷିତ ହୁଏ ଯେ ପୁରୁଷ ହିଁ ସ୍ତ୍ରୀ ପାଇଁ ସାମ୍ଭାବ୍ୟ ଖାଦ୍ୟ ହୋଇଥାଏ । ମିଳନ ପୂର୍ବରୁ ପୁରୁଷ ଏକ ଛୋଟ ଜାଲ୍ ପ୍ରସ୍ତୁତ କରି ସେଥିରେ ଶୁକ୍ରରସ ଜମାକରି ରଖେ । ତା'ପରେ ସେ ତାର ସ୍ପର୍ଶପାଦ (Palp ବା Pedipalp)କୁ ଶୁକ୍ରରସ ମଧ୍ୟରେ ବୁଡ଼ାଇ ରଖି ଏକ ସ୍ତ୍ରୀ ଅନ୍ୱେଷଣରେ ଥାଏ ।



ଚଢ଼େଇଖିଆ ବୁଢ଼ିଆଣୀର ତଳକୁ ମୁହଁ କରିଥିବା ଆଦ୍ୟସଂଦଂଶପଦ



ଡିଆଁ ବୁଢ଼ିଆଣୀର ଦୁଇ ପାର୍ଶ୍ଵକୁ କାର୍ଯ୍ୟ କରୁଥିବା ଆଦ୍ୟସଂଦଂଶପଦ

ତା' ପରେ ପୁରୁଷଟି ସ୍ତ୍ରୀକୁ ବିଭିନ୍ନ ସଙ୍କେତ ଏପରି ଦେଇଥାଏ ଯେ ସ୍ତ୍ରୀ ତାହାକୁ ଉପଯୁକ୍ତ ସାଥୀ ଭାବରେ ଚିହ୍ନିଥାଏ । ପୁରୁଷଟି ଏହା ଜାଣିବା ପରେ ସ୍ତ୍ରୀକୁ ଅନୁଧାବନ କରିଥାଏ ଓ ସ୍ତ୍ରୀ ପୁରୁଷକୁ ଆକ୍ରମଣ କରି ନ ଥାଏ ବା ଖାଇଦେଇ ନ ଥାଏ । ପରସ୍ପର ମଧ୍ୟରେ ବୁଝାମଣା ଭଲ ହେବା ଯୋଗୁଁ ମିଳନ ସମ୍ଭବ ହୋଇଥାଏ । ମିଳନ ବେଳେ ପୁରୁଷଟି ସ୍ପର୍ଶପାଦରୁ ଶୁକ୍ରରସ ଆଣି ସ୍ତ୍ରୀର ପ୍ରଜନନ ଦ୍ୱାରରେ ଢାଳିଦିଏ । ଡିଆଁ ବୁଢ଼ିଆଣୀ ଓ ଗଧିଆ ବୁଢ଼ିଆଣୀମାନଙ୍କର ଦୃଷ୍ଟିଶକ୍ତି ଭଲ । ଏମାନଙ୍କର ପୁରୁଷ ଗୋଡ଼ ଦ୍ୱାରା ମିଳନ ପାଇଁ ସଂକେତ ପ୍ରଦାନ କରନ୍ତି । ଧାତ୍ରୀ ଜାଲ ବୁଢ଼ିଆଣୀ *(Pisaura)*ର ସ୍ତ୍ରୀ ମିଳନ ପୂର୍ବରୁ ପୁରୁଷକୁ ଖାଇବାପାଇଁ ପୁରୁଷ ହିଁ ସ୍ତ୍ରୀକୁ ଭୁଲାଇବାପାଇଁ ଗୋଟିଏ କୀଟ ଧରି ତା ପାଖକୁ ଆସିଥାଏ । ତେଣୁ ସ୍ତ୍ରୀ ଖାଇବା ପାଇଁ ବା ଆକ୍ରମଣ କରିବାକୁ ଆସିଲେ କୌଶଳକ୍ରମେ ପୁରୁଷଟି ଖସିଯାଏ । କାରଣ ମଲା କୀଟକୁ ସ୍ତ୍ରୀ ସାମନାରେ ଛାଡ଼ି ସେ ଖସିଯାଏ ।

**ଅଣ୍ଡା ଓ ଛୁଆ**

ବୁଢ଼ିଆଣୀମାନେ ସମସ୍ତେ ଅଣ୍ଡା ଦିଅନ୍ତି । କ୍ଷୁଦ୍ର ବୁଢ଼ିଆଣୀ (Oonops) ମାତ୍ର ଦୁଇଟି ଅଣ୍ଡା ଦିଅନ୍ତି । ବୃତ୍ତାକାର ଜାଲ ବୁଢ଼ିଆଣୀ ପରି ଅନ୍ୟମାନେ ଏକ ହଜାରରୁ ଅଧିକ ଅଣ୍ଡା ଦେବାର ଜଣାଯାଏ । ଅଣ୍ଡାଗୁଡ଼ିକ ସାଧାରଣତଃ ଉଦ୍ଭିଦଗୁଡ଼ିକରେ ଦିଅନ୍ତି । ମାଆ ବୁଢ଼ିଆଣୀ ଅଣ୍ଡାଗୁଡ଼ିକୁ ଜଗିରଖେ ବା ରେଶମ ଜାଲ ମଧ୍ୟରେ ଆବୃତ୍ତ କରି ରଖେ ଅଥବା ରେଶମ କୋଷା ମଧ୍ୟରେ ରଖି ପେଟତଳେ ଧରି ବୁଲୁଥାଏ । ଅଣ୍ଡାଗୁଡ଼ିକ ଫୁଟିବା ପରେ ଛୁଆମାନେ ଭଲ ଭାବରେ ଦେଖିପାରନ୍ତି ନାହିଁ କି ସେମାନଙ୍କର ବୟନାଙ୍ଗ ଓ ବିଷଗ୍ରନ୍ଥି ମଧ୍ୟ ନ ଥାଏ । ବାହ୍ୟ ଚର୍ମ ଛାଡ଼ିବା ପର୍ଯ୍ୟନ୍ତ ସେମାନେ ଅଣ୍ଡା ମଧ୍ୟରେ ଥିବା କେଶର ଦ୍ୱାରା ଜୀବନଧାରଣ କରିଥାଆନ୍ତି । ଅଣ୍ଡା ଫୁଟିବା ପରେ ଛୁଆଗୁଡ଼ିକ ମାଆପରି ହେଲେହେଁ ଆକାରରେ ଖୁବ୍ ଛୋଟ ହୋଇଥାଆନ୍ତି । ତା'ପରେ ସେମାନେ ଗଛ ଉପରକୁ ଯାଇ ତାଙ୍କର ବସା ପରିତ୍ୟାଗ କରନ୍ତି ।



ବୁଢ଼ିଆଣୀ ଶରୀରରୁ ଚର୍ମ ନିର୍ମୋଚନ



ଅଣ୍ଡା ସହ ଏକ ବୁଢ଼ିଆଣୀର ଛାତି ତଳେ ରେଶମ କୋଷା

ଏହା ଉପରେ ସେମାନେ ବାୟୁରେ ଉଡ଼ିଯାଇ ନୂତନ ବସାରେ ପହଞ୍ଚନ୍ତି । ଗୋଟିଏ ପୂର୍ଣ୍ଣାଙ୍ଗ ବୁଢ଼ିଆଣୀ ଛୋଟରୁ ବଡ଼ ହେବା ପର୍ଯ୍ୟନ୍ତ ନିର୍ମୋଚନ (Ecdysis) ହାରାହାରି ଦଶ ଥର ଘଟିଥାଏ ।

## ଆତ୍ମରକ୍ଷା ଓ ପ୍ରତିରକ୍ଷା

କୀଟପତଙ୍ଗ ଖାଇବାବେଳେ ବୁଢ଼ିଆଣୀଗୁଡ଼ିକୁ ଶିକାର କରିଥାଆନ୍ତି ଅନେକ ପ୍ରାଣୀ । ମୁଖ୍ୟ ଶତ୍ରୁମାନଙ୍କ ମଧ୍ୟରେ ଥାଆନ୍ତି ପକ୍ଷୀ, ଚୁଚୁନ୍ଦ୍ରା ଓ ଏଣ୍ଡୁଅ ଆଦି ପ୍ରାଣୀମାନେ । ତା ଛଡ଼ା ବଡ଼ ବଡ଼ ବୁଢ଼ିଆଣୀ ଓ ଶିକାରୀ ବିରୁଡ଼ି (Hunting Wasp) ପରି କେତେକ କୀଟ ମଧ୍ୟ ଶତ୍ରୁ ଭାବରେ ଅନ୍ତର୍ଭୁକ୍ତ । ହେଲେ ବି ବୁଢ଼ିଆଣୀମାନଙ୍କଠାରେ ପ୍ରତିରକ୍ଷା ପାଇଁ ଥାଏ ଅନେକ ଉପାୟ । ଆତ୍ମରକ୍ଷା ନିମିତ୍ତ ପ୍ରତ୍ୟେକ ପ୍ରାଣୀ କିଛି ନା କିଛି ଉପାୟ ଅବଲମ୍ବନ କରିବାର ଦେଖାଯାଏ । ଆଉ ବୁଢ଼ିଆଣୀ ପରି ଏତେ କ୍ଷୁଦ୍ର ପ୍ରାଣୀମାନଙ୍କଠାରେ କେତେକ ଅଦ୍ଭୁତ ଉପାୟ ଓ କୌଶଳ ବଡ଼ ଆଶ୍ଚର୍ଯ୍ୟକର ମନେହୁଏ । କଙ୍କଡ଼ା ବୁଢ଼ିଆଣୀ ଓ ଅଧିକାଂଶ ବଗିଚା ବୁଢ଼ିଆଣୀଗୁଡ଼ିକର ବର୍ଣ୍ଣ ହିଁ ପରିବେଶ ସହ ବା ସେମାନଙ୍କର ପରିପାର୍ଶ୍ୱ ରଙ୍ଗ ସହ ମିଶିଯାଉଥିବାରୁ ଶତ୍ରୁ ସହଜରେ ସେମାନଙ୍କୁ ଶିକାର କରିବାର ସୁଯୋଗ ପାଆନ୍ତି ନାହିଁ । ଆଉ କେତେକଙ୍କର ବିକୃତ ଆକାର ବା କୁତ୍ସିତ ଆକାର ହିଁ ଭକ୍ଷକଙ୍କ ମନରେ ଭ୍ରମ ସୃଷ୍ଟି କରିବା ଦ୍ୱାରା ସେମାନେ ରକ୍ଷା ପାଆନ୍ତି ଶତ୍ରୁ ମୁହଁରୁ । କ୍ୱଚିତ୍ ଦେଖାଯାଉଥିବା ଯନ୍ତାଦ୍ୱାର ବୁଢ଼ିଆଣୀ ଅତି ବିଚିତ୍ର ରକମର ଦୁଇଟି ଉପାୟରେ ନିଜକୁ ବଞ୍ଚାଇଥାଏ । ପ୍ରଥମଟି ହେଉଛି ଗର୍ତ୍ତ ମଧ୍ୟକୁ ଏକ ଦ୍ୱାର ଓ ଦ୍ୱିତୀୟଟି ହେଉଛି କର୍କ ବା ଠିପି ପରି ଚକଟା କଠିନ ଉଦର । ଏ ପ୍ରକାର ବୁଢ଼ିଆଣୀକୁ ଛୁଇଁବା ମାତ୍ରେ ବା ଶତ୍ରୁର ସନ୍ଧାନ ବା ଆଭାସ ପାଇବା କ୍ଷଣି ସେ ଗର୍ତ୍ତ ମଧ୍ୟକୁ ପ୍ରବେଶ କରି ଗର୍ତ୍ତ ମୁହଁକୁ ଚଟକା ଟାଣୁଆ ଉଦର ଦ୍ୱାରା ସମ୍ପୂର୍ଣ୍ଣ ଭାବରେ ବନ୍ଦ କରିଦିଏ । ଗର୍ତ୍ତର ମୁହଁଟି ବନ୍ଦ ହୋଇଯିବାରୁ ଶତ୍ରୁ ସହଜରେ ଏହାକୁ ଜାଣିପାରେ ନାହିଁ । କ୍ରାନ୍ତିମଣ୍ଡଳୀୟ ବୃହତ୍ ଚଢ଼େଇଖିଆ ବୁଢ଼ିଆଣୀର କାମୁଡ଼ା ବାସ୍ତବିକ୍ ଖୁବ୍ ବିଷାକ୍ତପୂର୍ଣ୍ଣ କିନ୍ତୁ ଶତ୍ରୁ ପାଖରୁ ନିଜକୁ ଖସାଇବା ପାଇଁ ବା ଶତ୍ରୁକୁ ଭୁଲାଇବା ପାଇଁ ଏ ବୁଢ଼ିଆଣୀ ଆଗକୁ ଖସିଯିବା ସମୟରେ ନିଜର ପଶ୍ଚାତ୍‌ଭାଗକୁ ଗୋଡ଼ଦ୍ୱାରା



ପିମ୍ପୁଡ଼ି ବୁଢ଼ିଆଣୀର ଶରୀର ଗଠନ

ନିଜ ଶରୀରର ବିଷାକ୍ତ ଲୋମ ବା ଆଂଶୁଗୁଡ଼ିକୁ ଝାଡ଼ିଦେଇଥାଏ । ନିଜ ଶରୀରର ଏ ଆଂଶୁଗୁଡ଼ିକ ବିଷାକ୍ତ ହୋଇଥିବାରୁ ଖାଇବା ବା ଆକ୍ରମଣ ପାଇଁ ପଛେ ପଛେ ଗୋଡ଼ାଉଥିବା ପ୍ରାଣୀର ଚକ୍ଷୁ, ନାସା, ଚର୍ମ ଓ ଶରୀର ଆଦି କୁଣ୍ଡାଇ ହେବା ଯୋଗୁଁ ଶତ୍ରୁ ଅଟକି ରହିଯାଇଥାଏ । ଯାହାଫଳରେ ବୁଢ଼ିଆଣୀଟି ଚୁପ୍‌କରି ଖସିଯାଏ ଶତ୍ରୁ ମୁହଁରୁ । କେତେକ ଘାସବୁଢ଼ିଆଣୀର ଆକାର କାଠି, ଡାଳ ଓ ଘାସ ପରି ହୋଇଥିବାରୁ ଶତ୍ରୁମାନଙ୍କ ନଜରକୁ ତାହା ସହଜରେ ଆସି ନ ଥାଏ ବୋଲି ସେମାନେ ରକ୍ଷା ପାଇଥାଆନ୍ତି ସହଜରେ । ଅନ୍ଯ କେତେକ କ୍ରାନ୍ତିମଣ୍ଡଳୀୟ ଜଙ୍ଗଲ ବୁଢ଼ିଆଣୀ ଦୁର୍ଗନ୍ଧ ସ୍ୱାଦଯୁକ୍ତ ପିମ୍ପୁଡ଼ି ପରି ଦେଖିବାକୁ ହୋଇଥିବାରୁ ଭକ୍ଷକମାନେ ଏ ପ୍ରକାର ବୁଢ଼ିଆଣୀମାନଙ୍କଠାରୁ ଦୂରେଇ ଯାଇ ଥାଆନ୍ତି ।

**ଶିକାର କୌଶଳ**

ଖାଦ୍ୟଶିକୁଳୀ ଅନୁଯାୟୀ ପ୍ରାଣିଜଗତ୍‌ର ପ୍ରାଣୀମାନେ ଖାଦ୍ୟ ପାଇଁ ପରସ୍ପର ଉପରେ ନିର୍ଭରଶୀଳ । ବୁଢ଼ିଆଣୀ ଏତେ କ୍ଷୁଦ୍ର ହେଲେହେଁ ଚଢ଼େଇଖିଆ ବୁଢ଼ିଆଣୀ କେତେକ ତା'ଠାରୁ ଯଥେଷ୍ଟ ବଡ଼ ବଡ଼ ପ୍ରାଣୀଙ୍କୁ ଶିକାର କରିଥାଏ । ସେମାନଙ୍କର ମୁଖ୍ୟ ଶିକାର ହେଉଛି ଛୋଟ ଛୋଟ ପକ୍ଷୀ । ତା ଛଡ଼ା ବେଙ୍ଗ, ସରୀସୃପ (ଝିଟିପିଟି, ଏଣ୍ଡୁଅ ଆଦି ପ୍ରାଣୀ) ଏପରିକି ସାପ ଆଦି ଜୀବମାନଙ୍କୁ ମଧ୍ୟ କେତେକ ଶିକାର କରିବାର ଦେଖାଯାଏ । ଗଧିଆ ବୁଢ଼ିଆଣୀ ଖୁବ୍ ଜୋର୍‌ରେ ଦୌଡ଼ିପାରେ । ସେମାନେ ଶିକାର ପଛେ ପଛେ ଯାଇ ଶିକାର କରିବାରେ ଖୁବ୍ ବିଚକ୍ଷଣ । ଏପରିକି ଖୁବ୍ ବଡ଼ ଓ ଭୟଙ୍କର ଟାଣ ଖୋଳପାଧାରୀ ପୋକ (Beetle)ଆଦି ଏମାନଙ୍କ ହାବୁଡ଼ରୁ ରକ୍ଷା ପାଆନ୍ତି ନାହିଁ । ଡିଆଁ ବୁଢ଼ିଆଣୀ ତାର ଜାଲରେ ଶିକାର କରିବା ଅପେକ୍ଷା ଖପ୍ କରି ଆଗକୁ ଝୁଙ୍କିପଡ଼ି ଶିକାର କରିବାର ଅଭ୍ୟାସ ବଡ଼ ଆଶ୍ଚର୍ଯ୍ୟଜନକ । ଶତ୍ରୁକୁ ଦେଖିବାକ୍ଷଣି ଧୀରେ ଧୀରେ ଆଗକୁ ମାଡ଼ିଯାଇ ଏ ପ୍ରକାର ବୁଢ଼ିଆଣୀ ସେମାନଙ୍କର ସାମନା ଗୋଡ଼ରେ ଶତ୍ରୁକୁ ମାଡ଼ିବସନ୍ତି । ଡିଆଁ ବୁଢ଼ିଆଣୀମାନଙ୍କର ଦୃଷ୍ଟିଶକ୍ତି ଖୁବ୍ ପ୍ରଖର । ଶିକାର ଏବଂ ନିଜ ମଧ୍ୟରେ ଦୂରତାକୁ ଠିକ୍ ଭାବରେ ମାପି ଶିକାର କରିବାରେ ଏମାନେ ଖୁବ୍ କୁଶଳୀ । ସେହି ଅନୁସାରେ ତେଣୁ ଶିକାର ମାପିଚୁପି କରନ୍ତି । ସେଥିପାଇଁ ଖୁବ୍ କ୍ୱଚିତ୍ ତାଙ୍କର ଲକ୍ଷ୍ୟଭ୍ରଷ୍ଟ ହୋଇଥାଏ ଶିକାର ଧରିବାରେ । ବଣଭୁଆ ବୁଢ଼ିଆଣୀଗୁଡ଼ିକ ଶିକାର ଦେଖିଲେ ସାମନା ଲମ୍ବ ଗୋଡ଼ରେ ଦୌଡ଼ିଯାଇ କୁଦାମାରି ଶିକାରକୁ ଧରିନିଏ । ଅନ୍ୟ ବୁଢ଼ିଆଣୀମାନେ ମୁଖ୍ୟତଃ ତାଙ୍କ ରେଶମ ଜାଲରେ ରହି ଅପେକ୍ଷା କରି ରହିଥାଆନ୍ତି ଶିକାର ପାଇଁ । ଆସିଲେ କେତେବେଳେ ଧରିବେ ବୋଲି । ଏପରି ଶିକାର ପ୍ରଣାଳୀ ପରିଲକ୍ଷିତ ହୁଏ ଜଳ ବୁଢ଼ିଆଣୀ, ପୋଖରୀ ଓ ହ୍ରଦବୁଢ଼ିଆଣୀ ଏବଂ ବୃହତ୍ ଚଢ଼େଇଖିଆ ବୁଢ଼ିଆଣୀମାନଙ୍କଠାରେ । ପିମ୍ପୁଡ଼ି ବୁଢ଼ିଆଣୀ *(Myrmecium)* ଦେଖିବାକୁ ଅବିକଳ ପିମ୍ପୁଡ଼ି ପରି । ଏମାନଙ୍କର ଖାଦ୍ୟ ହେଉଛି ପିମ୍ପୁଡ଼ି ଏବଂ ପିମ୍ପୁଡ଼ିମାନଙ୍କ ବସା ହିଁ ଏ ବୁଢ଼ିଆଣୀମାନଙ୍କର ଘର । ପିମ୍ପୁଡ଼ିପରି ଦେଖାଯାଉଥିବା ବୁଢ଼ିଆଣୀମାନେ ତାଙ୍କର ସାମନା ଗୋଡ଼ ଦୁଇଟିକୁ ଠିକ୍ କୀଟମାନଙ୍କର ମୁଣ୍ଡପାଖରେ ଥିବା ଶୃଙ୍ଗିକା (Antenna) ପରି ହଲାନ୍ତି । ତେଣୁ ଏମାନଙ୍କ ନିକଟକୁ ଆସୁଥିବା ଶତ୍ରୁ ବା ଆକ୍ରମଣକାରୀ ଡରିଯାଏ । ଫଳରେ ଶତ୍ରୁର ନିକଟ ହୋଇ ଏ ବୁଢ଼ିଆଣୀ ଶତ୍ରୁକୁ ଆକ୍ରମଣ କରି ଖାଏ । ମୁଣା ଜାଲ ବୁଢ଼ିଆଣୀ ସୁଡ଼ଙ୍ଗ ମଧ୍ୟକୁ ରେଶମରେ ଆବୃତ୍ତ କରି ସେଠାରେ ରହିବା ସମୟରେ କୌଣସି ପ୍ରାଣୀ ବା କୀଟପତଙ୍ଗ ଆସିବାକ୍ଷଣି ସେ ସୁଡ଼ଙ୍ଗରୁ ବାହାରିଆସି ଶିକାରକୁ ମାରିଦିଏ । ତା'ପରେ ତାକୁ ସୁଡ଼ଙ୍ଗ ମଧ୍ୟକୁ ଟାଣିନେଇ ଶୋଷି କରି ଖାଏ ।

**ରେଶମ ଫାଶ, ବସା ଓ ଜାଲ**

ଅଧିକାଂଶ ବୁଢ଼ିଆଣୀ ଜାଲ ତିଆରି କରନ୍ତି । ଜାଲ ପାଇଁ ବୁଢ଼ିଆଣୀମାନେ ଖୁବ୍ ଜଣାଶୁଣା । ଗୀତ, ଗପ, ଉପନ୍ୟାସ, ଏକାଙ୍କିକା ଓ ଲୋକକଥା ଆଦିରେ ଏହି ସୂତାର ବର୍ଣ୍ଣନା ଦେଖିବାକୁ ମିଳେ । ଏ

ରେଶମ ସୂତାରେ ଘର ତିଆରି କରି ରହିବା, ସୂତା ସାହାଯ୍ୟରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା, ରେଶମ କୋଷା ମଧ୍ୟରେ ଅଣ୍ଡାକୁ ସୁରକ୍ଷିତ କରିବା, ସୂତା ଦ୍ୱାରା ଶିକାର କରିବା ଓ ନିମ୍ନରୁ ଉଚ୍ଚକୁ ଚଢ଼ିବା ଆଦି ବିଭିନ୍ନ କାର୍ଯ୍ୟ ସମ୍ଭବ ହୋଇଥାଏ । ଅନେକ ମୁଦ୍ରାବୁଢ଼ିଆଣୀ (Money Spider) ଶିକାର ଧରିବା ନିମିତ୍ତ ଏ ସୂତା ବ୍ୟବହାର କରି ନ ଥାନ୍ତି । ସେମାନେ ମୁଣ୍ଡକୁ ତଳକୁ କରି ରେଶମ ଜାଲର ନିମ୍ନ ଭାଗରେ ରୁହନ୍ତି । କୀଟପତଙ୍ଗ ଉପରୁ ଉଡ଼ିଆସି ପଡ଼ିଗଲେ ଜାଲରେ ଲାଖିଯାଆନ୍ତି ଓ ଜାଲଦ୍ୱାରା କବଳିତ ହୋଇଥାଆନ୍ତି । ଚିରିଣୀ ପଦୀ ବୁଢ଼ିଆଣୀ (Comb-footed Spider) ଅପରିଷ୍କାର ଫାଶୀକାଠ ପରି ଫାଶ ବା ଜାଲ ପ୍ରସ୍ତୁତ କରିବାର ଦେଖାଯାଏ । କଳା ବିଧବା ବୁଢ଼ିଆଣୀ ଏ ପ୍ରକାର ବୁଢ଼ିଆଣୀ ମଧ୍ୟରେ ଅନ୍ତର୍ଭୁକ୍ତ । ଏ ବୁଢ଼ିଆଣୀ ତା ଫାଶର କେନ୍ଦ୍ର ସ୍ଥଳରେ ରହି ଚାରିପଟେ ଥିବା ଅଠାଳିଆ ସୂତାରେ ଶତ୍ରୁ ଲାଖିଗଲେ ଖାଦ୍ୟ ଭାବରେ ବ୍ୟବହାର କରିଥାଏ । ଫାଶ ଜାଲରେ ମୁଖ୍ୟତଃ ଉଡ଼ନ୍ତା କୀଟପତଙ୍ଗ ଧରାପଡ଼ନ୍ତି । କିନ୍ତୁ ଅନ୍ୟକେତେକଙ୍କ କ୍ଷେତ୍ରରେ ଜାଲର ମଧ୍ୟଭାଗ ମୋଟା ହୋଇଥାଏ ଏବଂ ଲମ୍ବ ସୂତାଗୁଡ଼ିକ ସେଠାରୁ ଭୂମିକୁ ଝୁଲି ରହିଥାଏ । ଝୁଲିରହିଥିବା ସୂତାର ନିମ୍ନ ଭାଗରେ ବୁଢ଼ିଆଣୀ ଅଠାଳିଆ ଟୋପା ଆକାରର ଏକ ପଦାର୍ଥ ନିର୍ଗତ କରି ରଖିଥାଏ । ଭୂମି ଉପରେ ଯାଉଥିବା କୀଟପତଙ୍ଗ ଏ ଅଠାଳିଆ ସୂତା ଟୋପାରେ ଲାଖିଗଲେ ସୂତାର ସ୍ଥିତିସ୍ଥାପକତା ଗୁଣ ହେତୁ ଛୋଟ ହୋଇ ଆସେ ଓ ଶିକାରଟି ଅସହାୟ ଅବସ୍ଥାରେ ଟାଣିହୋଇ ଆସେ । ତା'ପରେ ଏ ବୁଢ଼ିଆଣୀ ଏହାକୁ ଖୁବ୍ ଜୋର୍‌ରେ ଟାଣିଆଣି ଧରିପକାଏ ଓ ଖାଇବାରେ ଲାଗିପଡ଼େ । ଆଉ ଏକ ପ୍ରକାର ଜାଲ ହେଉଛି ବୃତ୍ତାକାର ଜାଲ । ଏପରି ଜାଲ ପ୍ରସ୍ତୁତ ହୋଇଥାଏ ଅଧିକାଂଶ ପ୍ରକାର ବୁଢ଼ିଆଣୀ ଦ୍ୱାରା । ଏହା ଦେଖିବାକୁ ଠିକ୍ ବୃଷଭର ଚକ୍ଷୁ ପରି । ଅଣ୍ଡା ଫୁଟି ଛୁଆ ବାହାରିବା ମାତ୍ରେ ଛୁଆ ବୁଢ଼ିଆଣୀ ଏପରି ଜାଲ ପ୍ରସ୍ତୁତ କରିବାରେ ସମର୍ଥ ହୋଇଥାଏ । ଜାଲ ତିଆରି କରିବାବେଳେ ପ୍ରଥମେ ଦୁଇଟି ସ୍ଥିର ଥିବା ଜିନିଷ (Support) ମଧ୍ୟରେ ନିଜ ସୂତା ଏକ ସଂଯୋଗ ସ୍ଥାପନ କରେ । ଏଥିପାଇଁ ଯେ ବାୟୁର ସାହାଯ୍ୟ ଲୋଡ଼ିଥାଏ । ପବନ ହେବା କ୍ଷଣି ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ପବନରେ ଗତି କରି ଏପରି ଆକାର ହିଁ ସୂତାରେ ପ୍ରସ୍ତୁତ କରେ । ତା'ପରେ ସୂତାରେ ଇଂରାଜୀ ଅକ୍ଷର ୱାଇ (Y) ପରି ଆକାର କରେ ଓ ତାହା ଜାଲର କେନ୍ଦ୍ର (Hub) ହୋଇଥାଏ । ଏଥରୁ ସେ ଅନ୍ୟ ସବୁ ସୂତାଗୁଡ଼ିକ ସଂଯୋଗ କରି ପାଖରେ ଥିବା ସ୍ଥିର ଆଶ୍ରୟସ୍ଥଳକୁ ଯୋଗ କରେ । କ୍ରମଶଃ କେନ୍ଦ୍ର ସ୍ଥଳରୁ ପାର୍ଶ୍ୱକୁ ଯାଇ ସୂତା ଦ୍ୱାରା ସଂଯୁକ୍ତ କରି ଗୋଲାକାର ଜାଲ ଗଠନ କରେ ଓ ତା ଦ୍ୱାରା ଜାଲଟି ଶକ୍ତ ହୋଇଥାଏ । ଜାଲଟି ସମ୍ପୂର୍ଣ୍ଣ ହେବା ପରେ ବୁଢ଼ିଆଣୀଟି ଜାଲ ମଝିରେ ଅବସ୍ଥାନ କରେ । ଏହି ସମୟରେ ଅନେକ ବୁଢ଼ିଆଣୀ ସୂତାଗୁଡ଼ିକ ମଧ୍ୟରୁ କେବଳ ଗୋଟିଏ ସୂତାକୁ ସଂକେତ ସୂତା (Signal Thread) ଭାବରେ ତାର ଗୋଡ଼ରେ ଧରି ଜାଲ ମଧ୍ୟରେ ଲୁଚି ରହିଥାଏ । ଶତ୍ରୁର ବା ଶିକାରର ଆଭାସ ପାଇଲେ ସଙ୍କେତ ସୂତା ଦ୍ୱାରା ସେ ସତର୍କ ହୋଇଯାଏ । ଏକ ବୃତ୍ତାକାର ଜାଲରେ ପ୍ରାୟ ୨୦ ଯାର୍ଡ଼ ପରିମାଣର ସୂତା ଥାଏ । ଆଉ ଏ ସୂତାର ମୋଟ ହେଉଛି ଏକ ଇଞ୍ଚର ହଜାରଭାଗରୁ ଏକ ଭାଗ । ଏଥିରୁ ଅନୁମାନ କରାଯାଇପାରେ ଯେ ଏ ରେଶମ ସୂତା କେତେ ସରୁ ! ବାସ୍ତବିକ୍ ଫାଶଟି ଖୁବ୍ ହାଲୁକା; ମାତ୍ର ଜାଲର ଚାରିହଜାର ଗୁଣରୁ ଅଧିକ ଓଜନର ଏକ ବୁଢ଼ିଆଣୀ ଏହି ଜାଲରେ ଆଶ୍ରୟ ନେଇପାରେ । ଜାଲର କୌଣସି ଅସୁବିଧା ହୁଏ ନାହିଁ କି ପବନରେ ଆଦୌ ଛିଣ୍ଡିଯାଏ ନାହିଁ । ଅନେକ ସମୟରେ ବୁଢ଼ିଆଣୀ ପୁରୁଣା ଜାଲକୁ ଖାଇଯାଇ ଏକ ନୂତନ ଜାଲ ପ୍ରସ୍ତୁତ କରିଥାଏ । ବୃତ୍ତାକାର ଜାଲ ବୁଢ଼ିଆଣୀ ତାର ବିଷ ପ୍ରୟୋଗ କରି ମାରିବା ପୂର୍ବରୁ ଶିକାରକୁ ନିଜ ସୂତାରେ

ଗୁଡ଼ାଇ ଦେଇ ଅବଶ କରିପକାଏ । ତା'ପରେ ବିଷ ପ୍ରୟୋଗ କରି ରସ ଶୋଷି ଖାଏ ।

କ୍ରାନ୍ତିମଣ୍ଡଳୀୟ ଜାଲ ନିକ୍ଷେପ ବୁଢ଼ିଆଣୀ *(Dinopis)* କୌଣସି ଏକ ଲମ୍ବ ଆକାର ଜିନିଷକୁ ଆଶ୍ରୟ ଭାବରେ ପଛ ଗୋଡ଼ରେ ଧରି ଆଗ ଗୋଡ଼ ଅପେକ୍ଷା କରି ରହିଥାଆନ୍ତି; କିନ୍ତୁ କ୍ରାନ୍ତିମଣ୍ଡଳୀୟ କ୍ଷେପଣୀୟ ବୁଢ଼ିଆଣୀ ପରି କେତେକ ଏଥିରେ ସକ୍ରିୟ ଭୂମିକା ଗ୍ରହଣ କରିଥାଆନ୍ତି । ଏ ବୁଢ଼ିଆଣୀ ତା ଜାଲର ଯେ କୌଣସି ସୂତାର ଶେଷ ଭାଗରୁ ଏକ ସୂତା ତଳକୁ ଝୁଲାଇ ଦେଇ ରଖେ ।




ଦୂରରେ ଥାଇ ବିଭିନ୍ନ ପ୍ରକାର ବୁଢ଼ିଆଣୀର ଶିକାର ପ୍ରଣାଳୀ

ଚାରିଟି ମଧରେ ଛୋଟ ବୃତ୍ତ ଜାଲ ଧରି ଝୁଲି ରହିଥାଏ । ପାଖରେ କୌଣସି ଶତ୍ରୁ ଅତିକ୍ରମ କଲେ ଧରିଥିବା ଫାଶଟିକୁ ନିକ୍ଷେପ କରିଥାଏ ଶତ୍ରୁ ଉପରକୁ । ଶତ୍ରୁ ଖଣ୍ଡିଆଖାବରା ହୋଇ ଅବଶ ହେବା ପର୍ଯ୍ୟନ୍ତ ଏ ଜାଲଟିକୁ ଅନେକଥର ନିକ୍ଷେପ କରିବାରେ ଲଗାଇଥାଏ । ଅଧିକାଂଶ ବୁଢ଼ିଆଣୀ ଫାଶ ତିଆରି କରି ଫାଶ ମଧରେ ଶତ୍ରୁ ପଡ଼ିଲେ ଖାଇବା ପାଇଁ

ସୂତାର ନିମ୍ନଭାଗରେ ବା ଶେଷ ଭାଗରୁ ଏକ ଟୋପା ଅଠାଳିଆ ରେଶମ ହିଁ ଘଣ୍ଟାର ପେଣ୍ଡୁଲମ୍ ପରି ଝୁଲୁଥାଏ । ଏହି ସୂତାରେ ଏକ ଶିକାର ପଡ଼ିବା ପର୍ଯ୍ୟନ୍ତ ସୂତାଟି ଘିରିଘିରି ହୋଇ ବୁଲୁଥାଏ । ଶିକାର ପଡ଼ିଗଲେ କୌଶଳକ୍ରମେ ନିକ୍ଷେପ ବୁଢ଼ିଆଣୀ ତାକୁ ଖାଇବାରେ ଲାଗିଯାଏ ।

ଥୂକ ବୁଢ଼ିଆଣୀ *(Scytodes)*ର ଶିକାର ଧରିବା ପ୍ରଣାଳୀ ଆହୁରି ଅଦ୍ଭୁତ ରକମର । ଏହା ଆକାରରେ କେବଳ ପାଞ୍ଚ ମିଲିମିଟର ଲମ୍ବ ଓ ଏହାର ଗତି ଖୁବ୍ ଧୀର । ତଥାପି ଏହାଠାରୁ ଆକାରରେ ଯଥେଷ୍ଟ ବଡ଼ ଓ କ୍ଷିପ୍ର ଗତିରେ ଯାଉଥିବା ଶତ୍ରୁକୁ ଧରିବାରେ ସକ୍ଷମ ହୋଇଥାଏ ଏପ୍ରକାର ବୁଢ଼ିଆଣୀ । ସଂଦଂଶକ ଦ୍ୱାର ଏହା ଶତ୍ରୁ ଉପରକୁ ବିଷସହ ଅଠାର ଏକ ମିଶ୍ରଣ ଏକ ସେଣ୍ଟିମିଟର ଦୂରତାରୁ ସିଞ୍ଚନ (ସ୍ପ୍ରେ) କରେ । ଫଳରେ କୀଟ ବା ପତଙ୍ଗଟି ତଳେ ପଡ଼ିଯାଏ । ଶେଷରେ ଏ ବୁଢ଼ିଆଣୀ ତଳକୁ ଯାଇ ସଂଦଂଶକରେ ଫୋଡ଼ି ଶିକାରକୁ ମାରିପକାଏ । ସତରେ ମଣିଷ ପାନ ଖାଇ ଛେପ ପକାଇବା ପରି ସାମାନ୍ୟ ବୁଢ଼ିଆଣୀ ମଧ ଶତ୍ରୁ ଉପରକୁ ବିଷ ଛାଡ଼ିବା ଏକ ବିସ୍ମୟକର ଘଟଣା ହେଲେ ବି ସତ୍ୟ । ତେବେ ନିଜେ ବିଞ୍ଚିବା ପାଇଁ କେତେ ପ୍ରକାର କୌଶଳ ଏ ପ୍ରାଣୀମାନେ ଅବଲମ୍ବନ କରନ୍ତି । ତାହା ଦେଖିଲେ ବଡ଼ କିମ୍ଭୂତାକାର ମନେହୁଏ । ସତରେ ପ୍ରକୃତି କ'ଣ ଶିଖାଇଛି ଏମିତି ସବୁ କରି ନିଜର ସ୍ଥିତି ବଜାୟ ରଖିବା ପାଇଁ ?



ପୁରୁଣା ଜାଲ ବୁଢ଼ିଆଣୀର ଝିଟିପିଟି ଶିକାର ।

# ପକ୍ଷୀଖିଆ ବୁଢ଼ିଆଣୀ

## ଉପକ୍ରମ

ବୁଢ଼ିଆଣୀମାନଙ୍କର ଉପକାର, ଅପକାର, ଜାଲ ପ୍ରସ୍ତୁତି ଓ ଶିକାର ଆଦି ବିଷୟରେ ଶୁଣି ସତରେ ବିସ୍ମୟ ଲାଗୁଥିବ ଯେ ଏତିକି ଟିକିଏ ପ୍ରାଣୀ ହେଲେ ମଧ୍ୟ କରାମତି କମ୍ ନୁହେଁ । ଆଉ ଆମ ପରିବେଶରେ ଏମିତି କେଉଁ ପ୍ରାଣୀ ନାହିଁ ଯାହାର କିଛି ଆମ ପ୍ରତି ଅବଦାନ ନାହିଁ । ଆମେ ଘୃଣା କରୁଥିବା ଘରେ, ବାହାରେ, ବସ୍‌ରେ, ରେଳରେ, ଅବ୍ୟବହୃତ ସ୍ଥାନଗୁଡ଼ିକରେ ତଥା ଶୋଉଥିବା ଖଟତଳ ଆଦି ସ୍ଥାନମାନଙ୍କରେ ନିରାପଦରେ ଥିବା ବୁଢ଼ିଆଣୀଗୁଡ଼ିକ ଆମର କେତେ ଦରକାର ତାହା ନ ଦେଖିଲେ ବିଶ୍ୱାସ କରିହେବ ନାହିଁ । ଆଉ ସେମାନଙ୍କର ଖାଦ୍ୟ କଥା କହିଲେ ନ ସରେ । ବର୍ତ୍ତମାନ ଗୋଟିଏ ଅଦ୍ଭୁତ ପ୍ରକାର ବୁଢ଼ିଆଣୀ ବିଷୟରେ ଜାଣିବା ।

ବୁଢ଼ିଆଣୀ ! ସେ ପୁଣି ଖାଏ ଚଢ଼େଇ !! ବିଶ୍ୱାସ ନ ହେଲେ ମଧ୍ୟ ସତ । ଅଷ୍ଟପଦୀ ଶ୍ରେଣୀ (Class-Arachnida)ର ଏ **ସନ୍ଧିପଦ** (Phylum-Arthropoda) ପ୍ରାଣୀ ଏକ ସ୍ୱତନ୍ତ୍ର ପରିବାରର (Family-Theraphosidae) । ସାଧାରଣ ଭାବରେ ଏହା 'ଚଢ଼େଇଖିଆ' ବା 'ପକ୍ଷୀଖିଆ' ବୁଢ଼ିଆଣୀ ଭାବରେ ଜଣା । କିନ୍ତୁ ବୈଜ୍ଞାନିକମାନେ ଏହାକୁ ଡାକନ୍ତି 'ଥେରାଫୋସା' *(Theraphosa)* ନାମରେ । ବଞ୍ଚିଥିବା ସବୁଠାରୁ ବଡ଼ ବୁଢ଼ିଆଣୀଗୁଡ଼ିକ ମଧ୍ୟରେ ଚଢ଼େଇଖିଆ ବୁଢ଼ିଆଣୀ (ଯେଉଁମାନେ ଥେରାଫୋସିଡ୍ରେ ପରିବାରର) ସବୁଠାରୁ ବଡ଼ । ବର୍ଗ (Order) ଏମାନଙ୍କର ଆରାନିଏ (Aranaea) ଓ ଉପବର୍ଗ ହେଉଛି ମାଇଗାଲୋମର୍ଫେ (Suborder-Mygalomorphae) । ମୋଟାମୋଟି ଭାବରେ ଏମାନେ କୀଟ ନୁହନ୍ତି; ଏମାନେ ବାସ୍ତବରେ ଅଷ୍ଟପଦୀ, ଅର୍ଥାତ୍ ଏମାନଙ୍କର ଗୋଡ଼ସଂଖ୍ୟା ଆଠ । କୀଟ ଓ ପତଙ୍ଗମାନଙ୍କର ଗୋଡ଼ ସଂଖ୍ୟା ଛଅ; ଯେଉଁଥିପାଇଁ ଏମାନଙ୍କୁ କୁହାଯାଏ ଷଡ଼୍‌ପଦୀ (Hexapoda) ।

## କାହା ନଜରକୁ ପ୍ରଥମେ ଆସିଲା ?

ବୁଢ଼ିଆଣୀ ଚଢ଼େଇ ଖାଇବା କଥା ଶୁଣିଲେ ସତରେ ଅଜା-ଆଈଙ୍କ ଗପ ପରି ଲାଗେ । ବିଶ୍ୱାସ ଲାଗି ନ ପାରେ । କିନ୍ତୁ ଏହା ସତ କଥା ଯେ ଏତିକି ଟିକି ପ୍ରାଣୀଟି ମଧ୍ୟ ପକ୍ଷୀମାନଙ୍କୁ ଖାଇପାରେ । ପୂର୍ବରୁ କୁହାଯାଇଛି ଯେ ବୁଢ଼ିଆଣୀ କେତେକ ମାଂସାଶୀ (Carnivorous) । ତେବେ ଚଢ଼େଇଖିଆ ବୁଢ଼ିଆଣୀମାନେ ଏମିତି ମାଂସାଶୀ ପ୍ରକୃତିର ଅଛନ୍ତି ବୋଲି ପ୍ରଥମେ ଜଣେ ମହିଳା କହିଥିଲେ । ସେ ମହିଳାଜଣକ ଥିଲେ ସୁନ୍ଦର କଳାକାର । ସିବିଲ୍ଲା ମେରିଆନ (Sibilla Merian) ହିଁ ତାଙ୍କ ନାମ । ସେ ୧୭୦୫ ମସିହାରେ କୀଟପତଙ୍ଗ ଉପରେ ଏକ ବହି ଲେଖିଥିଲେ । ବହିଟିର ନାମ ଥିଲା 'ମେଟାମର୍‌ଫୋସିସ୍ ଇନ୍‌ସେକ୍‌ଟୋରମ୍ ସୁରିନାମେନ୍‌ସିୟମ୍' (Metamorphosis Insectorum Surinamensium) । ମୁଖ୍ୟତଃ କୀଟମାନଙ୍କ ଉପରେ ଆଲୋଚିତ ଏ ବହିରେ ଗୋଟିଏ ବଡ଼ ବୁଢ଼ିଆଣୀ ହମିଙ୍ଗ୍ ପକ୍ଷୀ (Humming Bird) ବସାରୁ ହମିଙ୍ଗ୍ ପକ୍ଷୀ ଟାଣି ଆଣୁଥିବାର ଛବିଟିଏ କରିଥିଲେ । ଏ ଛବିଟି ପ୍ରଥମେ ହିଁ ପ୍ରମାଣ ଦିଏ ଯେ ବୁଢ଼ିଆଣୀ ମାଂସାଶୀ ପ୍ରକୃତିର ଓ ପକ୍ଷୀମାନଙ୍କୁ ମଧ୍ୟ ଖାଇବାର । ଏ ବିବରଣୀ ତଥା ଛବିକୁ ପ୍ରଥମେ କେହି ବିଶ୍ୱାସ କରି ନ ଥିଲେ । ଏପରିକି ୧୮୩୪ ମସିହାରେ ଜଣେ ଅଷ୍ଟ୍ରେଲୀୟ ପ୍ରାଣିବିଜ୍ଞାନ ବିଶାରଦ (W. S. Macleay) ମେରିଆନ୍ ଲେଖିଥିବା

କଳାକାରଙ୍କ ପୁସ୍ତକକୁ ସମାଲୋଚନା କରିଥିଲେ ଏ ବୁଢ଼ିଆଣୀ ସଂପର୍କରେ । ତା'ପରେ ୧୮୩୬ ମସିହାରେ ବେଟସ୍ (H. W. Bates) ନାମକ ଜଣେ ବ୍ୟକ୍ତି ଘରେ ବା ଘର ପାଖରେ ଦେଖାଯାଉଥିବା ସାଧାରଣ ପକ୍ଷୀମାନଙ୍କୁ (Finches) ବୁଢ଼ିଆଣୀ ମାରି- ଦେଉଥିବାର ଯେତେବେଳେ ଲକ୍ଷ୍ୟ କଲେ ସେତେବେଳେହିଁ କଳାକାର ମେରିଆନ୍‌ଙ୍କ ତଥ୍ୟକୁ ସଂପୂର୍ଣ୍ଣ ଭାବରେ ଗ୍ରହଣ କଲେ ଓ ବିଶ୍ୱାସ କଲେ । ତେବେ ବେଟସ୍‌ଙ୍କର ଏ ବୁଢ଼ିଆଣୀର ଶିକାର ନଜରକୁ ଆସିଥିଲା ଆମାଜନ୍ ଉପତ୍ୟକାରେ । ଘଟଣାଗୁଡ଼ିକ ସଂକ୍ଷେପରେ ଆଲୋଚନା ବା ବର୍ଣ୍ଣନା କଲେ ମଧ୍ୟ ୧୭୦୫ ମସିହାରେ ଆବିଷ୍କାର କରାଯାଇଥିବା ଘଟଣା ପ୍ରମାଣିତ ହୋଇଥିଲା ଦୀର୍ଘ ୧୫୮ ବର୍ଷ ପରେ ଅର୍ଥାତ୍ ୧୮୬୩ ମସିହାରେ । ଏତେ ବର୍ଷ ସମୟ ନେଇଥିବାର କାରଣ ଛୋଟିଆ ପ୍ରାଣୀ ବୁଢ଼ିଆଣୀର ଶିକାର ହିଁ ନଜରକୁ ଆସିବା ଥିଲା ନିଶ୍ଚୟ ସମୟସାପେକ୍ଷ । ତେଣୁ ଜଣେ ମହିଳା କଳାକାର ହିଁ ଏ ବୁଢ଼ିଆଣୀର ପକ୍ଷୀଶିକାର ସଂପର୍କରେ ପ୍ରଥମେ ତଥ୍ୟ ପ୍ରଦାନ କରିଥିଲେ । ଅବଶ୍ୟ ସମୟ ଓ ଅନେକ ପର୍ଯ୍ୟବେକ୍ଷଣ ବୈଜ୍ଞାନିକ ତଥ୍ୟକୁ ପ୍ରମାଣ କରିଥାଏ ।

### ଚଢ଼େଇଖିଆ ବୁଢ଼ିଆଣୀର ବିଶେଷତ୍ୱ

ଚଢ଼େଇଖିଆ ବୁଢ଼ିଆଣୀ ପ୍ରାୟ ୬୦୦ ପ୍ରକାରର ଦେଖାଯାଆନ୍ତି କ୍ରାନ୍ତିମଣ୍ଡଳୀୟ ଅଞ୍ଚଳରେ । ଥେରାଫୋସା ନାମକ ଚଢ଼େଇଖିଆ ବୁଢ଼ିଆଣୀ ବ୍ୟତୀତ କେତେକ ଅନ୍ୟ ବୁଢ଼ିଆଣୀଙ୍କୁ ମଧ୍ୟ ଚଢ଼େଇଖିଆ ବୁଢ଼ିଆଣୀ କୁହାଯାଏ । ସେ ବୁଢ଼ିଆଣୀଗୁଡ଼ିକ ନିର୍ଦ୍ଦିଷ୍ଟ ଭାବରେ 'ଥେରାଫୋସିଡେ' ପରିବାରର ନ ହୋଇ ଅନ୍ୟ କେତେକ ସଂପର୍କୀୟ ପରିବାରର । ଅନ୍ୟ କେତେକ ଦୂରସଂପର୍କୀୟ ବୁଢ଼ିଆଣୀ ମଧ୍ୟ ଏ ନାମରେ ନାମିତ । ତେବେ ଯାହା ହେଲେବି ଥେରାଫୋସା ହିଁ ଚଢ଼େଇଖିଆ ବୁଢ଼ିଆଣୀ ଭାବରେ ଖୁବ୍ ଭଲଭାବରେ ଜଣାଶୁଣା ।



ଚଢ଼େଇଖିଆ ବୁଢ଼ିଆଣୀର ଗଛ ଉପରେ ଅବସ୍ଥାନ

ଚଢ଼େଇଖିଆ ବୁଢ଼ିଆଣୀମାନଙ୍କୁ ବେଳେବେଳେ ଟାରାଣ୍ଟୁଲା (Tarantula) ବୋଲି କୁହାଯାଏ । ବିଶେଷକରି ଆମେରିକୀୟ ଲେଖକମାନଙ୍କ ଭାଷାରେ ଏମାନେ ଟ୍ୟାରାଣ୍ଟୁଲା । କିନ୍ତୁ ବାସ୍ତବରେ ପ୍ରକୃତ ଟାରାଣ୍ଟୁଲା ହେଉଛି ଅନ୍ୟ ଏକପ୍ରକାର ବୁଢ଼ିଆଣୀ ଯାହାର ସାଧାରଣ ନାମ ଗଧିଆ ବୁଢ଼ିଆଣୀ (Wolf Spider) । ଏ ଗଧିଆ ବୁଢ଼ିଆଣୀ ବା ଟାରାଣ୍ଟୁଲା *(Lycosa tarantula)* ହିଁ ଦେଖାଯାଏ ଦକ୍ଷିଣ ଇଉରୋପରେ ।

ଅବଶ୍ୟ ଥେରାଫୋସା ଯେ କେବଳ ଚଢ଼େଇ ଖାଏ ତାହା ନୁହେଁ, ଅନ୍ୟ କେତେକ ବୁଢ଼ିଆଣୀ ମଧ ଚଢ଼େଇ ଖାଇବାର ଜଣାଯାଏ । ସେମାନେ ହେଲେ ଯନ୍ତାଦ୍ୱାର ବୁଢ଼ିଆଣୀ (Trapdoor Spider) ଓ ନେଫିଲା (Nephila Spider) ନାମକ ଅନେକ ପ୍ରକାର ବୁଢ଼ିଆଣୀ, ଯେଉଁମାନେ ପକ୍ଷୀଶିକାର କରିବାର ଦେଖାଯାଏ । ତେବେ ଯନ୍ତାଦ୍ୱାର ବୁଢ଼ିଆଣୀ ଛୋଟ ଛୋଟ ପକ୍ଷୀଗୁଡ଼ିକୁ ଶିକାର କରିବା ସ୍ଥଳେ ନେଫିଲା ବୁଢ଼ିଆଣୀର ଖୁବ୍ ଶକ୍ତ ଜାଲରେ ଛୋଟ ଛୋଟ ପକ୍ଷୀଗୁଡ଼ିକ ପଡ଼ିଯାଆନ୍ତି । ଶକ୍ତ ଜାଲରେ ଛନ୍ଦି ହୋଇଗଲେ ଜାଲରୁ ବାହାରକୁ ବାହାରି ଉଡ଼ିପାରନ୍ତି ନାହିଁ; ତେଣୁ ନେଫିଲା ସେ ପକ୍ଷୀମାନଙ୍କୁ ଖାଇଥାଏ । ତେବେ ଥେରାଫୋସା, ନେଫିଲା ଓ ଯନ୍ତାଦ୍ୱାର ବୁଢ଼ିଆଣୀଗୁଡ଼ିକ ପକ୍ଷୀ ଶିକାର କରି ଖାଇବାରେ ଧୁରନ୍ଧର ।

ଆମାଜନ୍‌ରେ ଦେଖାଯାଉଥିବା ସବୁଠାରୁ ବଡ଼ ବୁଢ଼ିଆଣୀର ଲମ୍ବ ୩.୫ ଇଞ୍ଚ ଏବଂ ସେମାନଙ୍କର ଗୋଡ଼ର ଲମ୍ବ ୧୦ ଇଞ୍ଚ । ଏ ବୁଢ଼ିଆଣୀର ଶରୀର ଓ ଗୋଡ଼ଗୁଡ଼ିକ କେଶଯୁକ୍ତ । ଧରିଲେ ହାତକୁ ଫୋଡ଼ି ହେଲାପରି ଅନୁଭବ କରିହୁଏ । ଏ କେଶଗୁଡ଼ିକ ଦେହର ଚର୍ମ ସଂସ୍ପର୍ଶରେ ଆସିଲେ ଭୀଷଣ କୁଣ୍ଡାଇ ହୁଏ । ସେଥିପାଇଁ ଏ ପ୍ରକାର ବୁଢ଼ିଆଣୀକୁ ଧରିବାପାଇଁ ସ୍ଥାନୀୟ ଲୋକମାନେ ଡରିଥାଆନ୍ତି । କାରଣ ଥରେ କୁଣ୍ଡାଇ ହେବା ଆରମ୍ଭ ହେଲେ ଅନେକ ସମୟ ପର୍ଯ୍ୟନ୍ତ କୁଣ୍ଡାଇହେବା ଲାଗି ରୁହେ । ଯନ୍ତ୍ରଣା ମଧ ହୋଇଥାଏ ।



ଚଢ଼େଇଖିଆ ବୁଢ଼ିଆଣୀର [illegible]ପାନ ଖିଆ

ଚଢ଼େଇଖିଆ ବୁଢ଼ିଆଣୀ ପରିବାରର ବିଶେଷତ୍ୱ ହେଉଛି ଚାରିଟି ଫୁସ୍‌ଫୁସ୍ ଓ ଚାରିଟି ଜାଲ ତିଆରି ଗ୍ରନ୍ଥି (Spinneret) । କିନ୍ତୁ ଅନ୍ୟ ବୁଢ଼ିଆଣୀ ପରିବାର (Suborder-Araneomorphae)ର ବୁଢ଼ିଆଣୀ ଶରୀରରେ ଦୁଇଟି ଫୁସ୍‌ଫୁସ୍ ଓ ଛଅଟି ଜାଲଗ୍ରନ୍ଥି ଥାଏ । ତା'ଛଡ଼ା ଚଢ଼େଇଖିଆ ବୁଢ଼ିଆଣୀ ମାଢ଼ି (Jaw)ଗୁଡ଼ିକ ଉପର ତଳ ହୋଇ କାର୍ଯ୍ୟ କରୁଥିବା ସ୍ଥଳେ ଅନ୍ୟ ବୁଢ଼ିଆଣୀଗୁଡ଼ିକର ମାଢ଼ି ଦୁଇପାର୍ଶ୍ୱକୁ (Side ways) କାର୍ଯ୍ୟ କରିଥାଏ । ଏସବୁ ଗଠନଗୁଡ଼ିକରୁ ଅନୁମିତ ହୁଏ ଯେ ଶରୀର ଗଠନରେ ଚଢ଼େଇଖିଆ ବୁଢ଼ିଆଣୀର କେତେକ ଭିନ୍ନତା ଦେଖାଯାଏ ।

## ଚଢ଼େଇଖିଆ ବୁଢ଼ିଆଣୀର ବ୍ୟବହାର

ଚଢ଼େଇଖିଆ ବୁଢ଼ିଆଣୀ ମୁଖ୍ୟତଃ ଆମାଜନ୍‌ରେ ଦେଖାଯାଏ । ଦିନବେଳେ ଏମାନେ ପାହାଡ଼ ଗୁହା ବା ଗଛ କୋରଡ଼ରେ ଲୁଚିଛପି ରହନ୍ତି ଓ ରାତିରେ ବାହାରନ୍ତି ଶିକାର କରିବାକୁ । ଏମାନେ ରାତ୍ରିଚର ପ୍ରାଣୀ । ରାତିରେ ଆମାଜନ୍ ଜଙ୍ଗଲ ଭିତରେ ଶିକାର ପାଇଁ ଲାଗିପଡ଼ନ୍ତି ଖୁବ୍ ଜୋର୍‌ରେ । ଏମାନେ ଅନ୍ୟ ବୁଢ଼ିଆଣୀମାନଙ୍କ ପରି ଜାଲ ତିଆରି କରନ୍ତି ନାହିଁ । ତେଣୁ ଏମାନେ ଜାଲ ତିଆରି କରି ପ୍ରାଣୀମାନଙ୍କୁ ଶିକାର କରିବାର ପ୍ରଶ୍ନ ଉଠେ ନାହିଁ । ଛୋଟ ଛୋଟ ସ୍ତନ୍ୟପାୟୀ ପ୍ରାଣୀ (Mammal) ଓ ହମିଙ୍ଗ୍ ପକ୍ଷୀ ଆଦି ଚଢ଼େଇଖିଆ ବୁଢ଼ିଆଣୀର ପ୍ରଧାନ ଖାଦ୍ୟ । ମଣିଷ ଦୁଇ ହାତ ଲମ୍ବିଗଲା ପରି ପ୍ରାୟ ୭.୫ ଇଞ୍ଚ ଲମ୍ବର ଗୋଡ଼କୁ ବଢ଼ାଇ ଚୁପ୍‌ଚାପ୍ ଟାଣିନିଏ ଏହାର ପ୍ରିୟ ଶିକାରକୁ । ଦେଖିଲା ମାତ୍ରେ ଆଖି ପିଛୁଳାକେ ଖପ୍‌କରି ମାଡ଼ିବସିବା ଏ ବୁଢ଼ିଆଣୀର ପ୍ରକୃତି । ତେବେ ହମିଙ୍ଗ୍ ପକ୍ଷୀଗୁଡ଼ିକୁ ସେମାନଙ୍କ ବସାରୁ ଟାଣି



ଚଢ଼େଇଖିଆ ବୁଢ଼ିଆଣୀର ଆଂଶୁଯୁକ୍ତ ଭୟଙ୍କର ଶରୀର

ଆଣିବାରେ ଏମାନେ ଖୁବ୍ କୌଶଳୀ । ଏମାନଙ୍କର ବିଷହିଁ ମହୁମାଛି ବିଷଠାରୁ ଉତ୍କଟ ନୁହେଁ ବୋଲି ଜଣାଯାଏ । କିନ୍ତୁ ଶରୀରରେ ଥିବା ସୂକ୍ଷ୍ମ ଲୋମପରି ଅଂଶଗୁଡ଼ିକ ତୀବ୍ର ଯନ୍ତ୍ରଣା ଦେଇଥାଏ ମନୁଷ୍ୟକୁ । ଲଣ୍ଡନ ଚିଡ଼ିଆଖାନାରେ ଥିବା କୀଟ ସଂଗ୍ରହାଳୟର ଜଣେ ରକ୍ଷକ (Museum Curator, London Zoo) ଥରେ ଏପରି ଏକ ବୁଢ଼ିଆଣୀକୁ ଧରି ଏମିତି କ୍ଷତ ହୋଇଥିଲା ଯେ ତାଙ୍କ ହାତ ଲାଲ ପଡ଼ିଯାଇ, ଫୁଲି ଅନେକ ଦିନ ପର୍ଯ୍ୟନ୍ତ କଷ୍ଟ ପାଇଥିଲେ । ଯନ୍ତ୍ରଣା ଅନେକ ଦିନ ଭୋଗିଲା ପରେ ତାଙ୍କ ହାତର ଗୋଟିଏ ଅଙ୍ଗୁଳି ସଂପୂର୍ଣ୍ଣ ଭାବରେ ସବୁଦିନପାଇଁ ବଙ୍କା ହୋଇ ରହିଯାଇଥିଲା । ଏଥିରୁ ଜଣାପଡ଼େ ଯେ, ଚଢ଼େଇଖିଆ ବୁଢ଼ିଆଣୀର ଦେହରେ ଓ ଗୋଡ଼ ସାରା ରହିଥିବା ଆଂଶୁପରି ଲୋମଗୁଡ଼ିକ ଯନ୍ତ୍ରଣା ସୃଷ୍ଟିକାରୀ । କିନ୍ତୁ ଲୋକ ଦେଖିଲେ ଏହାକୁ କେହି ମାରାତ୍ମକ ବୋଲି ଭାବିପାରନ୍ତି ନାହିଁ ।

## ଚଢ଼େଇଖିଆ ବୁଢ଼ିଆଣୀର ଶିକାର କୌଶଳ

ବୁଢ଼ିଆଣୀ ହଠାତ୍ ଶିକାରକୁ ଧରିଲେ ଇଂଜେକ୍ସନ୍ ଛୁଞ୍ଚି ପରି ଥିବା ଅଂଶରୁ ବିଷ ଝରାଇଥାଏ । ଛୁଞ୍ଚିପରି ଅଂଶକୁ ଫୋଡ଼ିଦେଇ ଧୀରେ ଧୀରେ ବିଷ ପ୍ରୟୋଗ କରେ । ଏ ବିଷର ଗୁଣ ଠିକ୍ ଜଣା ନ ଥିଲେ ମଧ ଏହା ଏତେ ଉତ୍କଟ ଧରଣର ବିଷ ନୁହେଁ; କାରଣ ଏହାର ବିଷ ଶିକାରକୁ ମାରି ପକାଏ ନାହିଁ କିମ୍ବା ଅଚଳ କରିଦିଏ ନାହିଁ । ତଥାପି ଦେଖାଯାଇଛି, ମଣିଷ ଦେହପାଇଁ ଏ ବିଷ ଯନ୍ତ୍ରଣା ସୃଷ୍ଟି କରିପକାଇଥାଏ । ଯନ୍ତ୍ରଣାଦାୟକ ସ୍ଥାନୀୟ ପ୍ରକ୍ରିୟା ଯୋଗୁଁ ଏ ବିଷ ପୁଷ୍ଟିସାର-ବିଘଟିତ ପାଚକ ଏନ୍‌ଜାଇମ୍ (Protein-Splitting Digestive Enzyme) । ଅଧିକାଂଶ ବୁଢ଼ିଆଣୀ ପାଚକ ରସ ଫୋଡ଼ି ଶିକାରଗୁଡ଼ିକୁ ତରଳ କରିପକାନ୍ତି ଓ ତା' ପରେ ଶିକାର ଶରୀରକୁ ଶୋଷି ଖାଇଦିଅନ୍ତି । ଚଢ଼େଇଖିଆ ବୁଢ଼ିଆଣୀ ଶିକାରର କୌଶଳ ହେଉଛି



ଚଢ଼େଇଖିଆ ବୁଢ଼ିଆଣୀର ହମିଙ୍ଗପକ୍ଷୀ ବସାରୁ ହମିଙ୍ଗପକ୍ଷୀ ଶିକାର

ଥର ଥର କରି ଅନେକବାର ଶିକାର ଶରୀରକୁ ଫୋଡ଼ି ବିଷ ପ୍ରୟୋଗ କରି ଶିକାରକୁ ମାରିବା । ଶିକାରକୁ ମାରିବା ପରେ ତରଳ କରି ଶୋଷି ଶୋଷି ଖାଇବା । ତେବେ ଏଠାରେ ଆହୁରି ଗୋଟିଏ ମଜା ଘଟଣା ହେଉଛି ଏହାର ଖାଇବା ପ୍ରକ୍ରିୟା ନେଇଥାଏ ଅନେକ ସମୟ । ଦ୍ୱିତୀୟତଃ ଏମାନେ ଯେ କୌଣସି ଗତିଶୀଳ ପ୍ରାଣୀଙ୍କୁ ମଧ୍ୟ ଆକ୍ରମଣ କରିଥାଆନ୍ତି ।

**ଚଢ଼େଇଖିଆ ବୁଢ଼ିଆଣୀର ଜୀବନଚକ୍ର**

ମିଳନ ବା ପ୍ରଣୟ (Courtship) ସମୟରେ ପୁରୁଷ ବୁଢ଼ିଆଣୀ ସ୍ତ୍ରୀ ବୁଢ଼ିଆଣୀ ପାଖକୁ ଅତି ଯତ୍ନ ସହକାରେ ସାବଧାନ ହୋଇ ଚାଲିଆସେ । ଖାଇଯିବା ଭୟରେ ପୁରୁଷଟି ତାହାର ସାମନା ଗୋଡ଼ ଦୁଇଟି ସାହାଯ୍ୟରେ ସ୍ତ୍ରୀ ବୁଢ଼ିଆଣୀକୁ ଜାବୁଡ଼ି ଧରେ । କିଛି ସମୟ ଜାବୁଡ଼ିଧରିବା ପରେ ମିଳନ ଘଟିଥାଏ । ତା' ପରେ ଧୀରେ ପୁରୁଷଟି ତରବର ହୋଇ ଚାଲିଯାଏ । ତେବେ ଏ ବୁଢ଼ିଆଣୀମାନଙ୍କର ଦେଖିବା ଶକ୍ତି କମ୍ । ସ୍ତ୍ରୀ ବୁଢ଼ିଆଣୀ ମିଳନ ପରେ ଅଣ୍ଡା ଦେବାକୁ ଆରମ୍ଭ କରେ । ଥରକରେ ସେ ଅଣ୍ଡା ଦିଏ ୫୦୦ରୁ ୧୦୦୦ ପର୍ଯ୍ୟନ୍ତ । ଅଣ୍ଡାଗୁଡ଼ିକ ଗ୍ରୀଷ୍ମଋତୁରେ ଢିଲା କୋଷା (Loose Cocoon) ମଧ୍ୟରେ ଦେଇଥାଏ । ଠିକ୍ ଆମ ଘରଗୁଡ଼ିକରେ ଥିବା ବୁଢ଼ିଆଣୀ କୋଷା ମଧ୍ୟରେ ଦେଇଥିବା ଅଣ୍ଡାପରି । କୁକୁଡ଼ା ଅଣ୍ଡା ଦେଇସାରି ତା' ଉପରେ ବସି ଯେପରି ଜଗିରୁହେ, ଠିକ୍ ସେହିପରି ଅଣ୍ଡା ଦେଇସାରିବା ପରେ ଅଣ୍ଡା ଉପରେ ବସି, ସାମନା ଗୋଡ଼କୁ ତା' ଉପରେ ରଖି ଅଣ୍ଡାଗୁଡ଼ିକୁ ଜଗୁଆଳି ପରି ଜଗିରୁହେ । ଅବଶ୍ୟ ସବୁ ବୁଢ଼ିଆଣୀ ପ୍ରାୟ ଅଣ୍ଡାଦେବା ପରେ ଅଣ୍ଡା ପାଖରେ ରହିବାର ଦେଖାଯାଏ ।

ଅଣ୍ଡାଗୁଡ଼ିକୁ ଜଗି ରହିଥିବା ସମୟରେ ବୁଢ଼ିଆଣୀ କିଛି ବିପଦର ସୂଚନା ପାଇଲେ ବା ଆଶଙ୍କା କଲେ ଡରେଇଥିବା ପରି ସେ ତା'ର ବିଷଦାନ୍ତ ହଲହଲ କରିଥାଏ । ତେଣୁ ଭୟରେ ପାଖକୁ ଅନ୍ୟ କିଏ ଆସି ଅଣ୍ଡାଗୁଡ଼ିକୁ ନେବାକୁ ସାହସ କରି ନ ଥାଆନ୍ତି । ପ୍ରାୟ ତିନିସପ୍ତାହ ପରେ ଅଣ୍ଡାଗୁଡ଼ିକ ଫୁଟି ଛୁଆମାନେ ବାହାରିଥାଆନ୍ତି । ଦେଖିବାକୁ ଖୁବ୍ ଧଳା ରଙ୍ଗର । କିନ୍ତୁ ଛୁଆଗୁଡ଼ିକ ଫୁଟି ବାହାରକୁ ଯିବା ପରିବର୍ତ୍ତେ କୋଷା ମଧ୍ୟରେ ପାଞ୍ଚସପ୍ତାହ ପର୍ଯ୍ୟନ୍ତ ରହିଥାଆନ୍ତି । କୋଷା ମଧ୍ୟରୁ ବାହାରକୁ ଆସିବା ବେଳକୁ ତାଙ୍କର ବର୍ଣ୍ଣ ହୋଇଥାଏ ଧୂସର ଓ ପେଟ ଉପରିଭାଗ କଳା କଳା ଦାଗରେ ଥାଏ ପୂର୍ଣ୍ଣ । ତଥାପି ବୁଢ଼ିଆଣୀ ଛୁଆଗୁଡ଼ିକ କୋଷା ନିକଟରେ ପୁଣି ୩ରୁ ୧୨ ଦିନ ପର୍ଯନ୍ତ ରହିବା ପରେ ଏଣେତେଣେ ଚାଲିଯିବାକୁ ଆରମ୍ଭ କରନ୍ତି । କୋଷା ମଧ୍ୟରୁ ବାହାରିସାରି କୋଷା ପାଖରେ ରହିବାର ଉଦ୍ଦେଶ୍ୟ ଯେ ସେମାନେ ନିଜକୁ ଏଣେତେଣେ ଯିବାପାଇଁ ପ୍ରସ୍ତୁତ କରନ୍ତି ।

ଛୁଆ ଚଢ଼େଇଖିଆ ବୁଢ଼ିଆଣୀ ପ୍ରଥମେ ଅତି ଛୋଟ ଛୋଟ ଓ ଧୀରେ ଧୀରେ ଯାଉଥିବା ପ୍ରାଣୀମାନଙ୍କୁ ଖାଇବାକୁ ଆରମ୍ଭ କରନ୍ତି । ପ୍ରଥମ ତିନି ବର୍ଷ ମଧ୍ୟରେ ସେମାନେ ୪ ମିଲିମିଟରରୁ ୧୬ ମିଲିମିଟର ଆକାରର ହୁଅନ୍ତି । ଜନ୍ମ ସମୟରେ ଓଜନ ଅତି କମ୍ (୦.୦୦୫୨ ଗ୍ରାମ୍) ଥାଏ । ହାରାହାରି ଓଜନ ପ୍ରାୟ ଗୋଟିଏ ଗ୍ରାମ୍‌ର ଦଶଭାଗରୁ ଆଠଭାଗ ପର୍ଯ୍ୟନ୍ତ ହୋଇଥାଏ । ଛୁଆ ବୁଢ଼ିଆଣୀଗୁଡ଼ିକ ବଡ଼ ବଡ଼ ହୋଇଯିବା ପରେ ସେମାନେ ଖାଦ୍ୟ ନ ପାଇଲେ ପ୍ରାୟ ଦୁଇବର୍ଷ ପର୍ଯ୍ୟନ୍ତ ଉପବାସରେ ରହିଯାଇପାରନ୍ତି । ଏ ବୁଢ଼ିଆଣୀଗୁଡ଼ିକ ପ୍ରାୟ ୧୭ ବର୍ଷ କାଳ ବଞ୍ଚି ପାରନ୍ତି । ଛୁଆ ଫୁଟିବା ଠାରୁ ଆରମ୍ଭ କରି ବଡ଼ ହେବା ମଧ୍ୟରେ ଏମାନଙ୍କ ଦେହରୁ ଅନେକ ଥର ଚୋପା ଛାଡ଼ିଥାଏ (Moulting) । ତେବେ ଏ ଚୋପାଛଡ଼ା ପ୍ରଣାଳୀ ବଡ଼ ଅଦ୍ଭୁତ ରକମର । ପ୍ରଥମ ତିନିବର୍ଷରେ ଚାରିଥର, ଚତୁର୍ଥ ଓ ପଞ୍ଚମବର୍ଷ ଦୁଇଥର ଓ ତା'ପରେ ବର୍ଷକୁ ଥରେ ଚୋପା ଛାଡ଼ିଥାଏ । ଚୋପା ଛାଡ଼ିବା ସମୟରେ ଦେଖିବା ଶକ୍ତି, ଶୁଣିବା ଶକ୍ତି ଓ ଛୁଇଁବା ଶକ୍ତି ସାଧାରଣତଃ ବନ୍ଦ ହୋଇଯାଉଥାଏ । ଏ ସମୟରେ ଆହୁରି ମଧ୍ୟ ଏ ବୁଢ଼ିଆଣୀମାନେ ଅନେକ ସମୟ ପର୍ଯ୍ୟନ୍ତ ଗତି କରିପାରନ୍ତି ନାହିଁ । ଅର୍ଥାତ୍ ଯାତାୟାତ ଶକ୍ତି ମଧ୍ୟ

ହରାଇଥାଆନ୍ତି । ତେବେ ଚଢ଼େଇଖିଆ ବୁଢ଼ିଆଣୀ ଜୀବନଚକ୍ରର ମଜା ଘଟଣା ହେଉଛି ଯେ ଅଣ୍ଡା ଦେବା ପରେ ଅଣ୍ଡାଗୁଡ଼ିକୁ ଆଗଗୋଡ଼ ଓ ଶରୀର ସାହାଯ୍ୟରେ ଜଗି ରହିବା, ଛୁଆ ଫୁଟି ବାହାରିବା ପରେ ମଧ୍ୟ ଲକ୍ଷ୍ୟ ରଖିବା ଓ ଶରୀରରୁ ଅନେକଥର ଚୋପା ଛାଡ଼ିବା ।

## ଚଢ଼େଇଖିଆ ବୁଢ଼ିଆଣୀର ଶତ୍ରୁ ଓ ଆତ୍ମରକ୍ଷା

ପ୍ରତ୍ୟେକ ପ୍ରାଣୀର ଶତ୍ରୁଥିବା ପରି ବୁଢ଼ିଆଣୀର ମଧ୍ୟ ଶତ୍ରୁ ଥାଏ । ତେବେ ଚଢ଼େଇଖିଆ ବୁଢ଼ିଆଣୀର ଶତ୍ରୁ କମ୍ ବୋଲି ଜଣାଯାଏ । ଏହାର ମୁଖ୍ୟ ଶତ୍ରୁ ହେଉଛି ଏକପ୍ରକାର ଶିକାରୀ ବିରୁଡ଼ି (Hunting Wasp) । ଶତ୍ରୁ ମୁହଁରୁ ନିଜକୁ ରକ୍ଷାକରିବା ପାଇଁ ଏହା ଦୁଇଟି ଉପାୟ ଅବଲମ୍ବନ କରିଥାଏ । ପ୍ରଥମ କଥା ହେଉଛି ଏ ବୁଢ଼ିଆଣୀକୁ ଆକ୍ରମଣ ବା ଶିକାର କରିବାକୁ ଗଲେ ବୁଢ଼ିଆଣୀ ପଛଗୋଡ଼ ଦୁଇଟି ସାହାଯ୍ୟରେ ନିଜ ଶରୀରକୁ କୋରେଇ କୋରେଇ ଶତ୍ରୁ ଦେହକୁ ଆଂଶୁ ବା ଲୋମଗୁଡ଼ିକୁ ନିକ୍ଷେପ କରେ । ଏପରି ଲୋମଗୁଡ଼ିକୁ ଗୋଡ଼ରେ ପକାଇଲା ସମୟରେ ଜଣାପଡ଼େ ସତେଯେପରି ପୁଳାଏ ପାଉଁଶ କିଏ ଛିଞ୍ଚିଦେଲା । ଆଉ ଏ ଲୋମଗୁଡ଼ିକ ଶତ୍ରୁକୁ ଅନ୍ଧ ଓ ଅସ୍ଥିର କରିପକାଏ । ସେଥିପାଇଁ ହିଁ ଏ ବୁଢ଼ିଆଣୀର ଶତ୍ରୁ ପ୍ରାୟତଃ କମ୍ । ଦ୍ୱିତୀୟତଃ ସାମନାରୁ ଏ ବୁଢ଼ିଆଣୀକୁ କିଏ ଆକ୍ରମଣ କରିବାକୁ ଆସିଲେ ମୁହଁ ପାଖରେ ଥିବା ବିଷାକ୍ତ ମାଢ଼ି ଉପରତଳ ହୋଇ ହଲିବାରୁ ଶତ୍ରୁ ମଧ୍ୟ ଭୟରେ ସହଜରେ ଆକ୍ରମଣ କରି ନ ଥାଏ । ଛୁଆମାନଙ୍କୁ ଜୀବନର ପ୍ରଥମ ସପ୍ତାହରେ ମାଆ ଯତ୍ନ (Parental Care) ନେଲେ ମଧ୍ୟ ଛୁଆମାନଙ୍କ ମଧ୍ୟରୁ ବହୁତ କମ୍ (ପ୍ରାୟ ହଜାରଟିରୁ ଦୁଇଟି ବା ୦.୨%) ହିଁ ବଡ଼ ହୋଇଥାଆନ୍ତି । ପ୍ରାଣିଜଗତ୍‌ର ସତରେ ଏ ବଡ଼ ବିସ୍ମୟ ଘଟଣା ।

ବୁଢ଼ିଆଣୀ ଛୋଟିଆ ପ୍ରାଣୀଟିଏ ହେଲେ ବି ଶିକାର କରିବା ଓ ନିଜକୁ ରକ୍ଷା କରିବାର ଉପାୟ ଏହାଠାରେ ଭଲ ଭାବରେ ଦେଖାଯାଏ । ପ୍ରାୟ ଅଧିକାଂଶ ବୁଢ଼ିଆଣୀ ଜାଲ ତିଆରି କରି ଜାଲରେ ରହି ଶିକାର କରିବା ବେଳେ ଚଢ଼େଇଖିଆ ବୁଢ଼ିଆଣୀ ଜାଲ ତିଆରି ନ କରିବା ଓ ତା'ଠାରୁ ବଡ଼ ବଡ଼ ମେରୁଦଣ୍ଡ ପ୍ରାଣୀମାନଙ୍କୁ ଶିକାର କରି ଖାଇବା ସତରେ ବଡ଼ ଅଦ୍ଭୁତ । ଆମର ପ୍ରକୃତି ଓ ପ୍ରକୃତିର କୋଳରେ ଦେଖାଯାଉଥିବା ଅଦ୍ଭୁତ ପ୍ରାଣୀମାନଙ୍କର ବିଚରଣ ବାସ୍ତବିକ୍ ବଡ଼ ମଜା ଲାଗେ । ଦେଖିବାପାଇଁ, ଶୁଣିବାପାଇଁ ବା ପଢ଼ିବାପାଇଁ ମଜା ଲାଗେ । ଏଥିପାଇଁ ଯେ ଆମ ଚାରିପଟ ପ୍ରାଣୀମାନଙ୍କର ବ୍ୟବହାର, ବୁଲାବୁଲି, ଶିକାର, ଆତ୍ମରକ୍ଷା ଓ ଅଣ୍ଡାଦେବା ଆଦି ପ୍ରକୃତି ଭିନ୍ନ ଭିନ୍ନ । ବିଭିନ୍ନତା ଓ ବୈଶିଷ୍ଟ୍ୟ ହିଁ ପ୍ରକୃତିର ଅନବଦ୍ୟ ସୃଷ୍ଟି ।



ଚଢ଼େଇଖିଆ ବୁଢ଼ିଆଣୀର ଚଢ଼େଇ ଶିକାର

# ଚୋରାଦ୍ୱାର ବୁଢ଼ିଆଣୀ

'ବୁଢ଼ିଆଣୀ ଜାଲ ଭାରି ଅଡୁଆ' – ଲଘୁ ସଙ୍ଗୀତର ଏ ପଦଟି ଶୁଣିଲେ ସତରେ ମନେ ପଡ଼ିଯାଏ ବୁଢ଼ିଆଣୀ କଥା । ଏଡ଼ିକି ଟିକି ଜୀବଟିଏ, ସେ ପୁଣି ତିଆରି କରେ ଏତେ ସରୁ ଜାଲ ! ଆଉ ଏ ଜାଲ ଦୃଷ୍ଟି ଆକର୍ଷଣ କରିଥାଏ ଗୀତିକାର, ନାଟ୍ୟକାର, ଲେଖକ, କବି, ଭାବୁକ ତଥା ବୈଜ୍ଞାନିକମାନଙ୍କର । ଏ ଆକର୍ଷଣର କାରଣ ବୋଧହୁଏ ସରୁ ସୂତା ଓ ଅଡୁଆ ଜାଲ । ମଜା କଥା ହେଉଛି ଏ ଜୀବଟିକୁ ସମସ୍ତେ ଚିହ୍ନନ୍ତି ତା'ର ଜାଲ ଯୋଗୁଁ । ବାସ୍ତବିକ୍ ବିରାଟ ଜାଲ ତିଆରି କରି ମଝିରେ ସେ ରହିଯାଇଥାଏ ଲୁଚିକରି । ବୁଢ଼ିଆଣୀକୁ ଭଲକରି କିଏ ଦେଖି ନ ଥିଲେ ମଧ ଜାଲକୁ ଉଣା-ଅଧିକେ ସମସ୍ତେ ଚିହ୍ନି ପାରନ୍ତି । ଆଉ ଜାଲ ଦେଖି ଅନୁମାନ କରିଥାଆନ୍ତି ଯେ ଏ ଜାଲ ମଝିରେ ଥିବ ନିଶ୍ଚୟ ବୁଢ଼ିଆଣୀଟିଏ । ଖୁବ୍ ଅଳ୍ପ କେତେକ ବୁଢ଼ିଆଣୀଙ୍କୁ ବାଦ୍‌ଦେଲେ ଅନେକ ବୁଢ଼ିଆଣୀ ଜାଲ ତିଆରି କରିବାରେ ଥାଆନ୍ତି ଖୁବ୍ କୁଶଳୀ କାରିଗର । ଏପରି ଦକ୍ଷ ବୁଢ଼ିଆଣୀମାନଙ୍କର ଜାଲ ଚଳ ଚଳ ଆଖିକୁ ଜଣା ପଡ଼ିଯାଏ । ବିଶେଷକରି ଶୀତଦିନେ ସକାଳେ ଏ ଜାଲଗୁଡ଼ିକରେ ପାଣିବୁନ୍ଦା ଲାଗି ମୁକ୍ତାପରି ଧଳା ଦେଖାଯାଉଥାଏ । ଏ ଦୃଶ୍ୟହିଁ ବାଡ଼ିବଗିଚାର ଗଛଗୁଡ଼ିକରେ ତିଆରି ହୋଇଥିବା ବୁଢ଼ିଆଣୀ ଜାଲ । ବୁଢ଼ିଆଣୀ ବଂଶ ମଧରେ ଏମିତି ଏକପ୍ରକାର ବୁଢ଼ିଆଣୀ ଅଛନ୍ତି, ଯେଉଁମାନଙ୍କର ଜାଲ ସହଜରେ ବାହାରୁ ଦେଖାଯାଏ ନାହିଁ କି ଜଣାପଡ଼େ ନାହିଁ । କିନ୍ତୁ ସେମାନେ ଅତି କୌଶଳର ସହ ଜାଲ ତିଆରି କରିଥାଆନ୍ତି । ସେମାନେ ହେଉଛନ୍ତି ଚୋରାଦ୍ୱାର ବୁଢ଼ିଆଣୀ ବା ଯନ୍ତାଦ୍ୱାର ବୁଢ଼ିଆଣୀ (Trapdoor Spider) ।

## ଚୋରାଦ୍ୱାର ବୁଢ଼ିଆଣୀଟି କ'ଣ ?

ଚୋରାଦ୍ୱାର ବୁଢ଼ିଆଣୀଟି ଅନ୍ୟ ବୁଢ଼ିଆଣୀମାନଙ୍କ ପରି ଏକପ୍ରକାର ବୁଢ଼ିଆଣୀ । ଏହା ସନ୍ଧିପଦ ପର୍ବର (Phylum-Arthropoda); କିନ୍ତୁ ଏହା କୀଟ ବା ପତଙ୍ଗ ନୁହେଁ । ଏହା ଏକ ଅଷ୍ଟପଦୀ (Order-Araneae ଓ Class-Arachnida) ଅର୍ଥାତ୍ ଶରୀରରେ ଥାଏ ଆଠଟି ଗୋଡ଼ । ବିଭିନ୍ନ ପରିବାରରେ ଭିନ୍ନ ଭିନ୍ନ ବୁଢ଼ିଆଣୀ ଥିବାପରି ଚୋରାଦ୍ୱାର ବୁଢ଼ିଆଣୀର ପରିବାରଟି ଅଲଗା (Family-Ctenizidae) । ଏମାନଙ୍କର ଜାତି ଓ ପ୍ରଜାତି କେତେଗୁଡ଼ିଏ ହେଲେ ବି କେତେକ ସାଧାରଣ ଚୋରାଦ୍ୱାର ବୁଢ଼ିଆଣୀ ବେଶି ନଜରକୁ ଆସିଥାଆନ୍ତି । ସେମାନଙ୍କ ମଧରୁ ଗୋଟିଏ ଆମେରିକାର *(Cteniza californica)* ଓ ଆଉ ଗୋଟିଏ ଅଷ୍ଟ୍ରେଲିଆର *(Blakistonia aurea)* । ଏ ପ୍ରକାର ବୁଢ଼ିଆଣୀମାନଙ୍କ ମଧରୁ କେତେକ କମ୍ ସଂଖ୍ୟାରେ ମଧ ନଜରକୁ ଆସନ୍ତି *(Bothriocyrtum californicum, Cteniza caementaria, Liphistius batuensis* ଇତ୍ୟାଦି) ।

## ଚୋରାଦ୍ୱାର ବୁଢ଼ିଆଣୀର ବିସ୍ତୃତି ଓ ଆକୃତି

ଚୋରାଦ୍ୱାର ବୁଢ଼ିଆଣୀମାନେ କ୍ରାନ୍ତିମଣ୍ଡଳୀୟ ଓ ଉପକ୍ରାନ୍ତିମଣ୍ଡଳୀୟ ଅଞ୍ଚଳରେ ଦେଖାଯାଆନ୍ତି । କିନ୍ତୁ ଏମାନଙ୍କ ପରି ଅନ୍ୟ ଏକପ୍ରକାର ବୁଢ଼ିଆଣୀମାନେ ରୁହନ୍ତି ଆମେରିକାର ଉଷ୍ଣମଣ୍ଡଳୀୟ ସ୍ଥାନ-ମାନଙ୍କରେ । ଏମାନଙ୍କ ନାମ ହେଉଛି ଥଳି ଜାଲ ବୁଢ଼ିଆଣୀ (Purseweb Spider) । ଏ ଥଳି ଜାଲ ବୁଢ଼ିଆଣୀମାନଙ୍କୁ ଭୁଲରେ ଚୋରାଦ୍ୱାର ବୁଢ଼ିଆଣୀ ବୋଲି କୁହାଯାଇଥାଏ । ଏ ଦୁଇଟି କିନ୍ତୁ ଭିନ୍ନ ଭିନ୍ନ । ମଜା କଥା ହେଉଛି ଯେ ବେଳେବେଳେ ଭୁଲରେ କୁହାଯାଉଥିବା ଟାରାଣ୍ଟୁଲା (Tarantula) ନାମକ ବଡ଼ ବଡ଼ ଲୋମ ଥିବା ପକ୍ଷୀଖିଆ ବୁଢ଼ିଆଣୀମାନଙ୍କ ସହ

ଚୋରାଦ୍ୱାର ବୁଢ଼ିଆଣୀର ସମତା ଦେଖାଯାଏ । କିନ୍ତୁ ଟାରାଣ୍ଟୁଲା ଓ ଚୋରାଦ୍ୱାର ବୁଢ଼ିଆଣୀ ବି ଅଲଗା ଅଲଗା । ଲୋକ ଥିବା ଯୋଗୁଁ ମନରେ ଏକାପରି ଧାରଣା ହୋଇଥାଏ ।

ଚୋରାଦ୍ୱାର ବୁଢ଼ିଆଣୀଟି ଦେଖିବାକୁ ଠିକ୍ ଅନ୍ୟ ବୁଢ଼ିଆଣୀମାନଙ୍କ ପରି । ଶରୀରର ଲମ୍ବ ପ୍ରାୟ ଏକ ଇଞ୍ଚ ବା ତା' ଠାରୁ ସାମାନ୍ୟ ଅଧିକ । ଗୋଡ଼ଗୁଡ଼ିକ କିନ୍ତୁ ଅନ୍ୟ ବୁଢ଼ିଆଣୀମାନଙ୍କ ଗୋଡ଼ ତୁଳନାରେ ଛୋଟ । ବିଶେଷକରି ପକ୍ଷୀଖିଆ ବୁଢ଼ିଆଣୀମାନଙ୍କ ଗୋଡ଼ ତୁଳନାରେ ଅପେକ୍ଷାକୃତ ସାନ । ଗୋଡ଼ ଆକୃତିରୁ ଏ ଦୁଇପ୍ରକାର ବୁଢ଼ିଆଣୀଙ୍କୁ ବାରି ହୁଏ । ଗୋଡ଼ ଓ ଦେହରେ ଥିବା ଆଁଶୁ ବା କେଶ (Bristle) ଗୁଡ଼ିକ ବି ସାନ ସାନ ଓ ଅସ୍ପଷ୍ଟ । ଆଁଶୁଗୁଡ଼ିକ ପତଳା; ଠାଏ ଠାଏ ଥାଏ ତ ଠାଏ ଠାଏ ନ ଥାଏ । ରଙ୍ଗଟି ସାଧାରଣତଃ ଫିକା ଅର୍ଥାତ୍ ବାଦାମୀ ବର୍ଣ୍ଣ । ଦେହର ବିଶେଷତ୍ୱ ହେଉଛି ବଡ଼ ମାଢ଼ି (Jaw) । ପ୍ରତ୍ୟେକ ମାଢ଼ିର ଲମ୍ବା ବିଷଦାନ୍ତ (Long Fang)



ଚୋରାଦ୍ୱାର [illegible] ଅପେକ୍ଷାରତ,

ଏବଂ ଧାଡ଼ିଏ ଶକ୍ତ ଟାଣ ଦାନ୍ତ(Horny Teeth) । ସମୁଦାୟ ଦେହଟି ଲମ୍ବାଳିଆ ଓ ପେଟଟି ଅଣ୍ଡାପରି । ପେଟର ଉପରିଭାଗଟି ଭାଗ ଭାଗ ହୋଇଥିବା ପରି ଗାର ଚିହ୍ନ ଦେଖାଯାଏ ।

## ଚୋରାଦ୍ୱାର ବୁଢ଼ିଆଣୀର ଶିକାର କୌଶଳ

ଏ ବୁଢ଼ିଆଣୀଟି ଖୁବ୍ ଛୋଟ ହେଲେହେଁ ଗୋଟିଏ ଅତି ଦକ୍ଷ ଶିକାରୀ । ଅନ୍ୟ ସାଧାରଣ ବୁଢ଼ିଆଣୀଗୁଡ଼ିକ ଗଛପତ୍ର, ଘରଦ୍ୱାର ଓ ଏଣେତେଣେ ଅବ୍ୟବହୃତ ସ୍ଥାନଗୁଡ଼ିକରେ ଜାଲ ତିଆରି କରିଥାଆନ୍ତି । କିନ୍ତୁ ଏମାନେ ତାଙ୍କ ଜାଲ ତିଆରି କରିଥାଆନ୍ତି ମାଟିତଳେ । ସେଇଟି ହିଁ ସେମାନଙ୍କର ଘର । ଯନ୍ତ୍ରୀ ତିଆରି କରିବା ପରି ଚୋରାଦ୍ୱାର ବୁଢ଼ିଆଣୀ ବୁଦ୍ଧି ଖଟାଇ ତାଙ୍କର ଘର ତିଆରି କରିଥାଆନ୍ତି । ଘର ତିଆରି ଆରମ୍ଭରେ ସେ ଗୋଟିଏ ଗାତ ଖୋଳନ୍ତି । ଗାତଟିର ଗଭୀର ଏକଫୁଟ ଓ ଗୋଲେଇ ପ୍ରାୟ ଏକରୁ ଦେଢ଼ଇଞ୍ଚ । ତଳପାଟିର ଦାନ୍ତଗୁଡ଼ିକ ଓ ବିଷଦାନ୍ତ ମାଟିକୁ କୋରେଇ କୋରେଇ ହାଲୁକା କରିପକାନ୍ତି । ମାଟି ହାଲୁକା ହୋଇଗଲେ ତାହାକୁ ଗାତ ଚାରିକଡ଼କୁ ଅର୍ଥାତ୍ ଗାତ ବାହାରକୁ ପକାଇଦିଏ । ଏପରି ଆବଶ୍ୟକ ମୁତାବକ ଗାତ (Shaft)ଟି ହୋଇଗଲା ପରେ ମାଟିଗାତ ଚାରିପଟେ ଜାଲଗୁଡ଼ିକ ଛନ୍ଦିଛାନ୍ଦି ଚାରିପାଖକୁ ଆବରଣ କରିପକାଏ । ତେଣୁ ସେ ଗାତର ଚାରିପାଖ ଟାଣ ହୋଇଯାଏ ଏବଂ ଚାରିପାଖରୁ ଆଉ ମାଟି ଖସି ଗାତ ପୂର୍ଣ୍ଣ ହୋଇପାରେ ନାହିଁ । ଗାତଟିକୁ ଦେଖିଲେ ଜଣାପଡ଼େ, ସତେଯେପରି ଚାରିପାଖ ରେଶମ ସୂତାଦ୍ୱାରା ଘେରାଯାଇଛି !

ଗାତଟି ଏପରି ସେ କରିଥାଏ ଯେ ତାହା ଠିକ୍ ନଳୀପରି ହୋଇଥାଏ । ମୁହଁଟି ତେଣୁ ହୋଇଥାଏ ଗୋଲାକାର । ଏ ମୁହଁଟିକୁ ତା' ପରେ ଘୋଡ଼ଣୀଟିଏ



ଯନ୍ତାଦ୍ୱାର ବୁଢ଼ିଆଣୀ ତା ପ୍ରସ୍ତୁତ ସୁଡ଼ଙ୍ଗ ମୁହଁର ରେଶମ ଜାଳ ଉପରେ ଅବସ୍ଥାନ

ତିଆରି କରି ବନ୍ଦ ରଖିବାକୁ ଚେଷ୍ଟା କରେ । ସେଥିପାଇଁ ସ୍ତର ସ୍ତର କରି ସୂତା ବା ଜାଲ ଓ ମାଟିକୁ ମିଶାଇ ଏକ ଟାଣ ଘୋଡ଼ଣୀ ବା ଦ୍ୱାର ତିଆରି କରେ । ଏଇଟି ତା' ଘରର ଦ୍ୱାର ଓ ଗୋଲେଇ ମୁହଁଟି ତା'ର ଯିବାଆସିବା ବାଟ ଦୁଆରର ଉପର ପାର୍ଶ୍ୱଟିକୁ ତା' ପରେ ଶିଉଳି ବା ତଳେ ପଡ଼ିଥିବା ଅନ୍ୟାନ୍ୟ ଛୋଟ ଛୋଟ ପତ୍ର ବା ଗଛ କାଠି ଆଦି ଆଣି ବିଛେଇ ଦିଏ । ତେଣୁ ଶିକାରୀ ବା ଅନ୍ୟ ପ୍ରାଣୀମାନେ ସେ ସ୍ଥାନରେ କିଛି ଅଛି ବୋଲି ଆଦୌ ଜାଣିପାରନ୍ତି ନାହିଁ । ଅର୍ଥାତ୍ ତା' ଘରଟିର ସ୍ଥାନହିଁ ପାଖରେ ଥିବା ଅନ୍ୟ ସ୍ଥାନଠାରୁ ଭିନ୍ନ ବୋଲି ଜଣା ନ ପଡ଼ିବା ପାଇଁ ସେ ଏପରି କରିଥାଏ । ଏପରି ଭାବରେ ସେ ଘରଟିକୁ ସଂପୂର୍ଣ୍ଣ କରିଥାଏ । ଆଉ ଘରଟିର ଦୁଆରଟି ଏକ ଯନ୍ତା ଭାବରେ କାମ କରିଥାଏ ବୋଲି ଏ ବୁଢ଼ିଆଣୀର ନାମ 'ଯନ୍ତାଦ୍ୱାର ବୁଢ଼ିଆଣୀ' ବା ଚୋରା ଦୁଆର ଭାବରେ କାର୍ଯ୍ୟ କରିଥାଏ ବୋଲି 'ଚୋରାଦ୍ୱାର ବୁଢ଼ିଆଣୀ' ବୋଲି ନାମକରଣ କରାଯାଇଛି । ଦୁଆର ଥିବା ଏପରି ଘର ଭିତରେ ବୁଢ଼ିଆଣୀଟି ଲୁଚିରହିବା ହିଁ ତା'ର ସ୍ୱଭାବ । ସାଧାରଣ ଅବସ୍ଥାରେ ସୁଡ଼ଙ୍ଗପରି ବାଟରେ ମଧ୍ୟ ରହିଥିବାର ଦେଖାଯାଏ ।

ଦୁଆରରେ ଦୁଇଟି ଛୋଟ ଛିଦ୍ର ତିଆରି ହୋଇଥାଏ । ଏ ଛିଦ୍ର ଦୁଇଟିକୁ ତା'ର ଆଗ ଗୋଡ଼ ଦୁଇଟି ଦ୍ୱାରା ସେ ସବୁବେଳେ ଜୋରରେ ଚାପି ଧରିଥାଏ । ତେଣୁ ତା' ଘର ଭିତରକୁ ସହଜରେ କେହି ପଶିବା ସମ୍ଭବ ହୋଇ ନ ଥାଏ । ଅବଶ୍ୟ ଏପରି ଘର ତିଆରି କରିବା ଆଉ କେତେକ ବୁଢ଼ିଆଣୀମାନଙ୍କ ଠାରେ ମଧ୍ୟ ଦେଖାଯାଏ । ସେମାନେ ବି ଘର ତିଆରି କରି ତାଙ୍କ ଜାଲରେ ଘରକୁ ଆବୃତ କରିପକାନ୍ତି । କିନ୍ତୁ ଯନ୍ତାଦ୍ୱାର ବୁଢ଼ିଆଣୀର



ଚୋରାଦ୍ୱାର ବୁଢ଼ିଆଣୀର ଦୁଆର ମୁହଁରେ ଶିକାର ପାଇଁ ଅପେକ୍ଷା



ତୋରାଦ୍ୱାର ବୁଢ଼ିଆଣୀର ରେଶମ ଆଚ୍ଛାଦିତ ସୁଡ଼ଙ୍ଗ ଘର



ତୋରାଦ୍ୱାର ବୁଢ଼ିଆଣୀ
ଏକ ତେଲୁଣିପୋକ ଶିକାର କରି ଘରକୁ ଟାଣି ନେଉଛି

ବିଶେଷତ୍ୱ ହେଉଛି ତା' ସୁଡ଼ଙ୍ଗପରି ଘରର ଦୁଆର ବା ଘୋଡ଼ଣୀ । ଏପରି ଦୁଆର ତିଆରି କାରିଗରୀ କୌଶଳ କୌଣସି ବୁଢ଼ିଆଣୀଠାରେ ଦେଖାଯାଏ ନାହିଁ । ବ୍ରିଟୋ (W. S. Bristowe) ନାମକ ଜଣେ ବୈଜ୍ଞାନିକ କୁହନ୍ତି ଯେ ଏକପ୍ରକାର ବୁଢ଼ିଆଣୀ *(Nemesia)* ପାଟିରୁ ଲାଳ ଝରାଇ ମାଟିରେ ତାହାକୁ ମିଶାଇ ତିଆରି କରେ ସୁଡ଼ଙ୍ଗର ଗୋଲେଇ । ଆଉ କେତେକ ବୁଢ଼ିଆଣୀମାନଙ୍କ ଘର ଦ୍ୱାରର ଧାର ଦନ୍ତୁରିତ ବା କଟାକଟା ମଧ୍ୟ ହୋଇଥାଏ ।

ଭୋକିଲା ବୁଢ଼ିଆଣୀର ଖାଦ୍ୟ ଆବଶ୍ୟକ ହେଲେ ସେ ଦୁଆରଟିକୁ ଅଳ୍ପ ଖୋଲା କରି ରଖିଥାଏ । ଅପେକ୍ଷା କରି ରୁହେ ପାଖକୁ କିଏ ଆସିବ ବୋଲି । ଖାଦ୍ୟ ବା ଶିକାର ଆସିବାର ଜାଣିଲେ- ଦୁଆର ବାହାରକୁ ଚାଲିଆସି ଶିକାରକୁ ଝାମ୍ପିନିଏ ଓ ଗାତ ମଧ୍ୟକୁ ପଶିଯାଏ । ତେବେ ଗାତ ବାହାରେ ଶିକାରକୁ ଧରିବାମାତ୍ରକେ ବିଷଦାନ୍ତରୁ ବିଷ ଝରାଇ ଶିକାରକୁ ମାରିବା ପରେ ଗାତକୁ ଆସେ ଓ ତା'ପରେ ପୁଣି ଦୁଆରକୁ ବନ୍ଦ କରିଥାଏ । ଆଉ କେତେକ କୁହନ୍ତି ଯେ ଏ ଯନ୍ତାଦ୍ୱାର ବୁଢ଼ିଆଣୀ କେବଳ ରାତିରେ ଶିକାର କରେ । ଏହାର ବିଷ ମନୁଷ୍ୟପାଇଁ ମାରାତ୍ମକ ନୁହେଁ । କିନ୍ତୁ ଅଷ୍ଟ୍ରେଲିଆରେ ଦେଖାଯାଉଥିବା ଏ ପ୍ରକାର ଯନ୍ତାଦ୍ୱାର ବୁଢ଼ିଆଣୀ ଆକ୍ରମଣରେ ବା କାମୁଡ଼ାରେ ସାପକାମୁଡ଼ା ଚିକିତ୍ସା ପରି ଚିକିତ୍ସା କରିଥାଆନ୍ତି । ତେବେ ଏ ପ୍ରକାର ବୁଢ଼ିଆଣୀମାନଙ୍କର ଶିକାର ହେଉଛି ଛୋଟ ଛୋଟ ପୋକ, କୀଟ, ଲାର୍ଭା ଓ ତେଲୁଣିପୋକ ଇତ୍ୟାଦି ।

## ତୋରାଦ୍ୱାର ବୁଢ଼ିଆଣୀର ପ୍ରଜନନ

ମାଈ ବୁଢ଼ିଆଣୀ ଗାତ ମଧ୍ୟରେ ଅଣ୍ଡାଗୁଡ଼ିକ ଦେଇଥାଏ । ଅନ୍ୟ ବୁଢ଼ିଆଣୀମାନଙ୍କ ପରି ଏ ବୁଢ଼ିଆଣୀର ଅଣ୍ଡାଗୁଡ଼ିକ ରେଶମ କୋଷା (Silken




ଧାବକ ବୁଢ଼ିଆଣୀ



ବୃହଦ୍ କଙ୍କଡ଼ା ବୁଢ଼ିଆଣୀ



କଙ୍କଡ଼ା ବୁଢ଼ିଆଣୀ




କୁଦାମରା ବୁଢ଼ିଆଣୀ



ଶତ୍ରୁ ମୁହଁରୁ ରକ୍ଷା ପାଇବାପାଇଁ ଯନ୍ତାଦ୍ୱାର ବୁଢ଼ିଆଣୀର କଠିନ ଚଟକା ଗୋଲାକାର ଉଦର



କ୍ଷେପଣୀୟ ବୁଢ଼ିଆଣୀ



ଏ ସମୁଦ୍ର ବୁଢ଼ିଆଣୀ ନୁହେଁ; ମା' ପିଠିରେ ଛୁଆମାନେ ।



ଗଧିଆ ବୁଢ଼ିଆଣୀ



ଅଣ୍ଡାରୁ ଫୁଟି ଛୁଆମାନେ ଏଣେତେଣେ ଯିବାପାଇଁ ଉଦ୍ୟତ



ବୃତ୍ତାକାର ଜାଲ ବୁଢ଼ିଆଣୀ



ବିଧବା ବୁଢ଼ିଆଣୀ



ଟାରାଣ୍ଟୁଲା : ଏକ ଭୟଙ୍କର ବୁଢ଼ିଆଣୀ

Cocoon) ମଧ୍ୟରେ ରହିଥାଏ । ଏ ରେଶମ କୋଷାଟି ଗାତର କାନ୍ଥକୁ ଲାଗି ରହିଥାଏ । ଅଣ୍ଡାଗୁଡ଼ିକ ଫୁଟି ଛୁଆ ବାହାରିବା ପରେ ମାଆ ସହ ଆଠମାସ ପର୍ଯ୍ୟନ୍ତ ଗାତ ମଧ୍ୟରେ ରହିଥାଆନ୍ତି । ତା'ପରେ ଛୁଆଗୁଡ଼ିକ ବାହାରକୁ ଆସି ମାଆପରି ପୁଣି ତାଙ୍କର ଘର ତିଆରି କରି ସାଧାରଣ ଜୀବନଯାପନ କରନ୍ତି ।

## ବିଚିତ୍ର ଏ ଚୋରାଦ୍ୱାର ବୁଢ଼ିଆଣୀ

ଯନ୍ତାଦ୍ୱାର ବୁଢ଼ିଆଣୀର ଦ୍ୱାର ବାସ୍ତବିକ୍ ଏକ ବିସ୍ମୟ । ଶିକାରୀ କବଳରୁ ତ ାଇବାପାଇଁ ଏପରି ଦ୍ୱାର ତିଆରି ହୋଇଥିଲେ ମଧ୍ୟ ଏହାର ବୁଦ୍ଧି ଓ କାରିଗରୀ କୌଶଳ ବାସ୍ତବିକ୍ ବଡ଼ ବିଚିତ୍ର । ବିଶେଷକରି ଏହାର ଶତ୍ରୁ ହେଉଛନ୍ତି ଶିକାରୀ ବିରୁଡ଼ି (Hunting Wasp) । ଏମାନଙ୍କଠାରୁ ବଞ୍ଚିବାପାଇଁ ପ୍ରକୃତି ଏମାନଙ୍କୁ ଶିଖାଇଛି ଏପରି ଅଦ୍ଭୁତ ବୁଦ୍ଧି; ଜାଣିଛନ୍ତି ଏମାନେ କାରଗିଲ୍ ସୈନ୍ୟମାନଙ୍କ ପରି ଆତ୍ମଗୋପନର ଉପାୟ । ବିଚିତ୍ରମୟ ପ୍ରକୃତି ମଧ୍ୟରେ ବାସ୍ତବିକ୍ ଏ ବୁଢ଼ିଆଣୀ ବଡ଼ ବିଚିତ୍ର ।

# ମୁଣାଜାଲ ବୁଢ଼ିଆଣୀ

ବୁଢ଼ିଆଣୀ ଅତି ନଗଣ୍ୟ ଜୀବଟିଏ । କିନ୍ତୁ କରାମତି କହିଲେ ନ ସରେ । ଆଉ କରାମତି ତା'ର ଜଣାପଡ଼େ ଅତି ସରୁ ଓ ସୂକ୍ଷ୍ମ ଜାଲରୁ । ଜାଲ ଯୋଗୁଁ ସମସ୍ତଙ୍କ ପାଖରେ ଏ କୁନି ପ୍ରାଣୀଟି ଅତି ପରିଚିତ । କିନ୍ତୁ କଥା ହେଉଛି ଆମମାନଙ୍କ ପାଖରେ ଯେଉଁ ବୁଢ଼ିଆଣୀଗୁଡ଼ିକ ଦେଖାଯାଆନ୍ତି ସେମାନେ ହେଉଛନ୍ତି ଘରେ ଥିବା ବୁଢ଼ିଆଣୀ, ବାଡ଼ିବଗିଚା, ଖଟତଳେ, ରୋଷେଇଘରେ, ପୁରୁଣା ଘରେ, ପାଠପଢ଼ା ଟେବୁଲ ତଳେ ଓ ବ୍ୟବହୃତ ହେଉ ନ ଥିବା ସ୍ଥାନମାନଙ୍କରେ ଥିବା ବୁଢ଼ିଆଣୀ । ଏମାନେ ଆମର ଅତି ସାଧାରଣ ଓ ଜଣାଶୁଣା ଜୀବ । ଚୋରାଦ୍ୱାର ବୁଢ଼ିଆଣୀ ଯେପରି ଆମପାଇଁ ଅଜଣା ଓ ଅଶୁଣା ବୁଢ଼ିଆଣୀ ଥିଲା ଏବେ ଆଉ ଏକ ସୁନ୍ଦର ଅଜଣା ବୁଢ଼ିଆଣୀ ବିଷୟରେ ଦେଖିବା । ନାଁ' ତା'ର 'ମୁଣାଜାଲ ବୁଢ଼ିଆଣୀ' ବା 'ଥଳିଜାଲ ବୁଢ଼ିଆଣୀ' (Purse-web Spider) ।

## ମୁଣାଜାଲ ବୁଢ଼ିଆଣୀର ପରିଚୟ

ଆଠଟି ଗୋଡ଼ଥିବା ବୁଢ଼ିଆଣୀମାନଙ୍କ ପରି ଏ ଏକପ୍ରକାର ବୁଢ଼ିଆଣୀ । ମୁଣାଜାଲ ବୁଢ଼ିଆଣୀକୁ ବହୁତ ସମୟରେ ଚୋରାଦ୍ୱାର ବୁଢ଼ିଆଣୀ ବୋଲି ଭୁଲରେ କୁହାଯାଏ । କିନ୍ତୁ ଏ ଦୁଇଟିଯାକ ସଂପୂର୍ଣ୍ଣ ଭିନ୍ନ । ବ୍ୟବହାରରେ ଅର୍ଥାତ୍ ଜାଲତିଆରି କରିବାରେ କେତେକ ସମତା ଥିବାରୁ ଦୁଇଟିଯାକ ଏକାପ୍ରକାର ବୁଢ଼ିଆଣୀ ବୋଲି ମନକୁ ଆସେ । ଏ ଦୁଇଟି ପ୍ରକାର ବୁଢ଼ିଆଣୀ ମାଟିରେ ସୁଡ଼ଙ୍ଗ କରି ରୁହନ୍ତି ବୋଲି ଏମାନଙ୍କୁ ଜାଆଁଳା ବୁଢ଼ିଆଣୀ କୁହାଯାଇପାରେ ।

ଚୋରାଦ୍ୱାର ବୁଢ଼ିଆଣୀର ପରିବାର (Ctenizidae) ଓ ମୁଣାଜାଲ ବୁଢ଼ିଆଣୀର ପରିବାର (Atypidae) ଅବଶ୍ୟ ଅଲଗା ଅଲଗା । ମୁଣାଜାଲ ବୁଢ଼ିଆଣୀଗୁଡ଼ିକ ମୁଖ୍ୟତଃ ବ୍ରିଟିଶ୍ ଦ୍ୱୀପପୁଞ୍ଜରୁ ଡେନ୍‌ମାର୍କ ପର୍ଯ୍ୟନ୍ତ ଏବଂ ହଙ୍ଗେରୀ ଓ ଦକ୍ଷିଣ ଭାଗକୁ ଆଲଜେରିଆ ପର୍ଯ୍ୟନ୍ତ ସ୍ଥାନଗୁଡ଼ିକରେ ରୁହନ୍ତି । ଅର୍ଥାତ୍ ଏମାନଙ୍କ ମୁଖ୍ୟ ଘର ହେଉଛି ପଶ୍ଚିମ ୟୁରୋପ ଅଞ୍ଚଳ । ଉଭୟ ପୁରୁଷ ଓ ସ୍ତ୍ରୀ ବୁଢ଼ିଆଣୀର ଆକାର ମାତ୍ର ଅଧ ଇଞ୍ଚ । ସାଧାରଣ ମୁଣାଜାଲ ବୁଢ଼ିଆଣୀର ବୈଜ୍ଞାନିକ ନାମ ଏଟିପସ୍ *(Atypus affinis)* ।

## ମୁଣାଜାଲ ବୁଢ଼ିଆଣୀର ଘର ତିଆରି

ମୁଣାଜାଲ ବୁଢ଼ିଆଣୀର ଘର ପ୍ରାୟ ଚୋରାଦ୍ୱାର ବୁଢ଼ିଆଣୀର ଘର ପରି । ଘରଟି ଏମାନେ ବି ମାଟିତଳେ ତିଆରି କରନ୍ତି, ଠିକ୍ ସୁଡ଼ଙ୍ଗ ପରି । ମୁଣାଜାଲ ବୁଢ଼ିଆଣୀର ଘର ମାଟିତଳେ ଗାତପରି ନ କରି ଲମ୍ବ ଭାବରେ ସୁଡ଼ଙ୍ଗ ପରି ତିଆରି କରେ ଅର୍ଥାତ୍ ଗାତଟି ଭୂଇଁ ସହ ସମାନ୍ତରାଳ । ସୁଡ଼ଙ୍ଗର ଲମ୍ବ ପ୍ରାୟ ଏକଫୁଟ ଓ ଗୋଲେଇ ଅଧ ଇଞ୍ଚ । ଏ ସୁଡ଼ଙ୍ଗର ଯିବା ମୁହଁଠାରୁ ଅଳ୍ପ ଦୂରରେ ସୁଡ଼ଙ୍ଗର ଭିତର ପାଖକୁ ଲାଗି ଏକ ଇଞ୍ଚ ଲମ୍ବର ଏକ ରେଶମ ଥଳି (Silken Bag) ତିଆରି କରେ । ଏ ଥଳିଟି ଅଲଗା ଭାବରେ ମୁକ୍ତ ଭାବରେ ରହିଥାଏ । ଥଳିଟିର ଦୁଇ ମୁହଁ ବନ୍ଦ ହୋଇଥାଏ । ବୁଢ଼ିଆଣୀଟି ଏ ରେଶମ ଥଳି ତିଆରି କରିଥାଏ ତା' ନିଜ ଜାଲଗ୍ରନ୍ଥିରୁ । ଚୋରାଦ୍ୱାର ବୁଢ଼ିଆଣୀ ଗାତ ଚାରିପଟ ରେଶମ ସୂତାରେ ଆବୃତ କରିବା ବେଳେ ମୁଣାଜାଲ ବୁଢ଼ିଆଣୀ ତା' ଗ୍ରନ୍ଥିରୁ ରସ ଝରାଇ ତିଆରି କରିଥାଏ ଏକ ଅଲଗା ରେଶମ ଥଳି । ସେଥିପାଇଁ ଏପ୍ରକାର ବୁଢ଼ିଆଣୀର ନାମକରଣ 'ମୁଣାଜାଲ ବୁଢ଼ିଆଣୀ' ବୋଲି କରାଯାଇଛି । ବାସ୍ତବିକ୍ ଏହାର ଆକାର ଏକ ମୁଣା ବା ଥଳି ପରି ।

## ମୁଣାଜାଲ ବୁଢ଼ିଆଣୀର ଶିକାର ପ୍ରଣାଳୀ

ବୁଢ଼ିଆଣୀମାନେ ମୁଖ୍ୟତଃ ଭଲ ଶିକାରୀ । ଚାଲାକ ଉପାୟରେ ଶିକାର କରିବା ସେମାନଙ୍କ ସ୍ୱଭାବ । ଶିକାରର ଆଉ ଏକ ବିଶେଷତ୍ୱ ହେଉଛି ଯେ ଖୁବ୍ କମ୍ ପରିଶ୍ରମରେ ଏଣେତେଣେ ନ ଯାଇ ଶିକାର କରିବା । ତେଣୁ ଏମାନେ ପ୍ରାୟ ଜାଲ ତିଆରି କରି ଜାଲ ମଝିରେ ହେଉ ବା ଜାଲ ପାଖରେ ହେଉ ଅପେକ୍ଷା କରି ଧୀରସ୍ଥିର ଅବସ୍ଥାରେ ରହନ୍ତି ଶିକାରକୁ ଅପେକ୍ଷା କରି । ଶିକାର ଆସିବାମାତ୍ରେ ଖପ୍ କରି ମାଡ଼ିବସନ୍ତି । ମୁଣାଜାଲ ବୁଢ଼ିଆଣୀ ସୁଡ଼ଙ୍ଗ ବାହାରକୁ ନ ଆସି ଅର୍ଥାତ୍ ସୁଡ଼ଙ୍ଗ ଭିତରେ ଥାଇ ଶିକାର କରିଥାଏ ବା ପାଇଥାଏ । ସୁଡ଼ଙ୍ଗର ମୁହଁ ପାଖ ଦେଇ କୀଟ ବା ଲାର୍ଭା ଆଦି ଯିବାବେଳେ ବୁଢ଼ିଆଣୀଟି ଆସି ଖପ୍‌କରି ମାଡ଼ିବସି ବିଷଦାନ୍ତରୁ ବିଷ ଝରାଇଥାଏ । ତା' ପରେ ବିଷଯୋଗୁଁ ଶିକାରଟି ମରିଯାଏ । ଶିକାରଟି ନିସ୍ତେଜ ହୋଇଗଲେ ତାକୁ ସୁଡ଼ଙ୍ଗ ଭିତରକୁ ଟାଣି ଟାଣି ନେଇଯାଏ । ତା'ପରେ ତା'ର ଜାଲରେ ତାକୁ ଛନ୍ଦି ପକାଏ । ଛନ୍ଦିସାରି ତାକୁ ସେ ଖାଇବା ଆରମ୍ଭ କରେ । ଏହିପରି ପରିସ୍ଥିତି ଦେଖି ସେ ଶିକାରକୁ ସବୁବେଳେ ଛକି ରହି ଖାଇଥାଏ ।

## ମୁଣାଜାଲ ବୁଢ଼ିଆଣୀର ପ୍ରଜନନ

ମୁଣାଜାଲ ବୁଢ଼ିଆଣୀର ମିଳନ ହିଁ ଘଟିଥାଏ ସୁଡ଼ଙ୍ଗ ଭିତରେ ତିଆରି କରିଥିବା ରେଶମ ଥଳି ପାଖରେ । ମିଳନର ସମୟ ହେଉଛି ସେପ୍ଟେମ୍ବର ଅକ୍ଟୋବର ମାସରେ । ତା'ପରେ ଅଣ୍ଡା ଦେବା ଆରମ୍ଭ ହୁଏ । କିନ୍ତୁ ଏ ଅଣ୍ଡାଦେବା ବହୁତ ସମୟ ଡେରିରେ ହୋଇଥାଏ । ପ୍ରାୟ ଜୁନ୍ ମାସରୁ ଅଗଷ୍ଟ ମଧ୍ୟରେ । ଅଣ୍ଡାର ସଂଖ୍ୟା ୧୦୦ରୁ ୧୫୦ ପର୍ଯ୍ୟନ୍ତ । ଅଣ୍ଡାଗୁଡ଼ିକ ଫୁଟି ଛୁଆ ବାହାରିବାର ସମୟ ଅଗଷ୍ଟ ସେପ୍ଟେମ୍ବର ମାସ ମଧ୍ୟରେ । ଛୁଆଗୁଡ଼ିକ ଫୁଟି ବାହାରିବା ପରେ ମାଆ ପାଖରେ ମାର୍ଚ୍ଚ ଏପ୍ରିଲ ମାସ ପର୍ଯ୍ୟନ୍ତ ରହନ୍ତି । ଏଥିରୁ ଜଣାପଡ଼େ ଯେ ମିଳନରୁ ଛୁଆଗୁଡ଼ିକ ତାଙ୍କ ଘର ଛାଡ଼ିବା ପର୍ଯ୍ୟନ୍ତ ସମୟ ଲାଗେ ଦେଢ଼ବର୍ଷ ବା ୧୮ ମାସ । ତେଣୁ ଏ ବୁଢ଼ିଆଣୀର ଛୁଆ ଦେବା ସମୟ ସତରେ ସମୟସାପେକ୍ଷ ।

## ମୁଣାଜାଲ ବୁଢ଼ିଆଣୀର ବିଶେଷତ୍ୱ

ପ୍ରାଣିଜଗତ୍‌ର ଅନେକ ପ୍ରାଣୀର କିଛି ନା କିଛି ବିଶେଷତ୍ୱ ଦେଖାଯାଏ । ମୁଣାଜାଲ ବୁଢ଼ିଆଣୀର ମଧ୍ୟ ସେପରି କିଛି ମହତ୍ତ୍ୱ ରହିଛି । ମଣିଷର ଅନିଷ୍ଟ ନ କରି କୀଟମାନଙ୍କୁ ଖାଇ ପରିବେଶର ଭାରସାମ୍ୟ ରକ୍ଷା କରୁଛି ସତ; ମାତ୍ର ଏହାର ବିଶେଷ ଲକ୍ଷଣ ହେଉଛି ଏକ ରେଶମଥଳି ନିଜ ଜାଲରେ ତିଆରି କରିବା । ଆଉ ଏ ଜାଲ ନିରାପଦରେ ରହୁଛି ସୁଡ଼ଙ୍ଗର ଭିତର ପାଖକୁ । କେହି ନେଇପାରିବେ ନାହିଁ କି ନଷ୍ଟ କରିପାରିବେ ନାହିଁ । ସତରେ ବୁଢ଼ିଆଣୀ ଜଗତରେ ମୁଣାଜାଲ ବୁଢ଼ିଆଣୀର ସ୍ଥାନ ସ୍ୱତନ୍ତ୍ର ।



ମୁଣାଜାଲ ବୁଢ଼ିଆଣୀର ଆକାର ଓ ଶିକାର

# କଳା ବିଧବା ବୁଢ଼ିଆଣୀ

ଆମ ଚାରିପଟେ କେତେ ଯେ ପ୍ରାଣୀ ଅଛନ୍ତି କହିଲେ ନ ସରେ । ସତରେ ବିଚିତ୍ର ପୃଥିବୀଟି ପ୍ରାଣୀମାନଙ୍କର ଏକ ଅସରନ୍ତି ଭଣ୍ଡାର । ଏମାନଙ୍କର ପ୍ରକାର, ଆକାର, ବ୍ୟବହାର, ଗତି, ପ୍ରକୃତି ଓ ପ୍ରଜନନ ଆଦି ଦେଖିଲେ ବିଶ୍ୱାସ କରିହୁଏନି ଯେ ସାମାନ୍ୟ ପ୍ରାଣୀମାନଙ୍କର କି ଅଦ୍ଭୁତ କରାମତି ! କିଏ ଯନ୍ତ୍ରୀ (ମହୁମାଛି, ବିଭର, ବୁଢ଼ିଆଣୀ, ବିରୁଡ଼ି, ଉଇ) ତ ଆଉ କିଏ ମଣିଷ ପରି ସମାଜ ଗଠନ କରିଛି (ଉଇ, ପିମ୍ପୁଡ଼ି, ବିରୁଡ଼ି) ଅଥବା ଆଉ କେଉଁମାନେ ଖାଦ୍ୟ, ଔଷଧ ଆଦି ଯୋଗାଇ ଆମକୁ ବଞ୍ଚାଇ ରଖିଛନ୍ତି । ଆଉ ଏମିତି ବି କିଛି ଜୀବଜନ୍ତୁ ଅଛନ୍ତି ଯେଉଁମାନେ ବିଷାକ୍ତ ଓ ଦକ୍ଷ ଶିକାରୀ ବି । ଏସବୁ ଭିନ୍ନତା ସତ୍ତ୍ୱେ ସମସ୍ତ ପ୍ରାଣୀ ଥିବାରୁ ଆମ ପୃଥିବୀରେ ଅନ୍ତତଃ ଭାରସାମ୍ୟ ଠିକ୍ ରହିଛି ବୋଲି ମନେହୁଏ । ଅନେକ ପ୍ରାଣୀ ମଧ୍ୟରେ ବୁଢ଼ିଆଣୀ ଗୋଟିଏ ଅତି ନଗଣ୍ୟ ପ୍ରାଣୀ ଭାବରେ ଆମ ଚାରିପଟେ ଦେଖାଯାଏ । ତାହା ଉପରେ କାହାର ନଜର ନ ଥାଏ, କାରଣ ମନ ମଧ୍ୟରେ ଆମର ଟିକି ଜୀବଟିଏ ବୋଲି ଦୟା ଥାଏ – କିଛି ତ ଉପକାର କରେନି; ତଥାପି ତା'ର ଜାଲ ଯୋଗୁଁ କିଏ କେମିତି ତାକୁ ଜାଣି ରଖିଥାଆନ୍ତି । ଆଉ ଜାଣିବାର ଗୋଟିଏ ପ୍ରଧାନ ବାଟ ହେଉଛି ଶୀତଦିନ ସକାଳେ କାକର ପଡ଼ିଥିବା ଗଛମାନଙ୍କୁ ଅନାଇଲେ ଜାଲଗୁଡ଼ିକରେ ସୂର୍ଯ୍ୟକିରଣ ପଡ଼ି ମୁକ୍ତାପରି ଚିକ୍ ଚିକ୍ କରୁଥିବା ଅଙ୍କାବଙ୍କା ଜାଲଗୁଡ଼ିକ । କିଏ କାହିଁକି ବା ଭାବିବ ଯେ ଏମିତି ଗୋଟିଏ କୁନି ପ୍ରାଣୀର ଏସବୁ ବିନ୍ଧାଣି କାରିଗରପରି କରାମତି ଥାଇପାରେ ବୋଲି ! ସଂକ୍ଷେପରେ କହିଲେ ଏ ଜାଲ ହିଁ ତା'ର ଘର । ଆମେ ତ ବର୍ତ୍ତମାନ ସୁନ୍ଦର ସୁନ୍ଦର ଘରଦ୍ୱାର ତିଆରି କରି ରହିବା ପାଇଁ ଆଗ୍ରହୀ ତା' ସାଙ୍ଗକୁ ଉଇ ବିରାଟ ହୁଙ୍କା, ପକ୍ଷୀମାନଙ୍କର ବିଚିତ୍ର ବସା (ବାୟା ବସା) ଓ ଅହିରାଜ ସାପର ଦୁଇତାଲା କୋଠରି ଆଦି ଦେଖିଲେ ବିଶ୍ୱାସ କରିହୁଏନି ଯେ ପ୍ରାଣୀମାନେ ବି ଏମିତି ଘର ତିଆରି କରିପାରନ୍ତି ବୋଲି । ସେମିତି ବୁଢ଼ିଆଣୀ ତା'ର ଜାଲରେ ଘର ତିଆରି କରି ରହିବା ହିଁ ସ୍ୱଭାବ ।

## କଳା ବିଧବା ବୁଢ଼ିଆଣୀ – ଏକ ବିଚିତ୍ର ନାମ

ବୁଢ଼ିଆଣୀ ସଂପର୍କରେ ଏହା ପୂର୍ବରୁ କିଛିଟା ଆଲୋଚନା କରାଯାଇଛି । କେତେକ ବୁଢ଼ିଆଣୀ ଓ ସେମାନଙ୍କର ପ୍ରକୃତି ଓ ଜାଲ ତିଆରି ବିଷୟରେ ବିଶେଷକରି ଆଲୋକପାତ କରାଯାଇଥିଲା । କଳା ବିଧବା ବୁଢ଼ିଆଣୀ ଆମ ବୁଢ଼ିଆଣୀ ଶ୍ରେଣୀର ଆଉ ଗୋଟିଏ ବୁଢ଼ିଆଣୀ । ନାଁଟି ସତରେ ବଡ଼ ବିଚିତ୍ର । ଅନେକଙ୍କର ବିଶ୍ୱାସ ଯେ ମିଳନ ପରେ ପରେ ସ୍ତ୍ରୀ ବୁଢ଼ିଆଣୀ ପୁରୁଷ ବୁଢ଼ିଆଣୀଙ୍କୁ ମାରି ଖାଇଯାଏ । ଏ ବୁଢ଼ିଆଣୀର ବର୍ଣ୍ଣ କଳା । ତା' ସହ ପୁଣି ମିଳନ ପରେ ପୁରୁଷ ମରିଯାଉଥିବା ବିଶ୍ୱାସ ଯୋଗୁଁ ହିଁ ଏହାର ନାମ କଳା ବିଧବା (Black Widow) ବୁଢ଼ିଆଣୀ ବୋଲି କରାଯାଇଛି । କଥା ହେଉଛି ମିଳନ ପରେ ପୁରୁଷ ବୁଢ଼ିଆଣୀକୁ ସ୍ତ୍ରୀ ବୁଢ଼ିଆଣୀ ଖାଇବା କଥା ସତ୍ୟ ନୁହେଁ ବୋଲି କେତେକଙ୍କର ମତ । କାରଣ ଦେଖାଯାଇଛି ଯେ କେତେକ ପୁରୁଷ ବୁଢ଼ିଆଣୀ ବହୁ ସ୍ତ୍ରୀ ବୁଢ଼ିଆଣୀମାନଙ୍କ ସହ ରହିଥାଆନ୍ତି । ତେଣୁ ଏ ପ୍ରକାର ବହୁପତ୍ନୀକ (Polygamous) ବୁଢ଼ିଆଣୀ ପ୍ରତ୍ୟେକ ଥର ମିଳନ ପରେ ମରିବାର ପ୍ରଶ୍ନ ଅସମ୍ଭବ । ତେବେ ଗୋଟିଏ କଥା ହୋଇପାରେ ଯେ ଗୋଟିଏ ପୁରୁଷ ବୁଢ଼ିଆଣୀ ଅନେକ ଥର ମିଳନ ପରେ ମୁମୂର୍ଷୁ ଅବସ୍ଥା (Moribund)ରେ ପହଞ୍ଚି ମରିଯିବା ପରେ ହିଁ ସ୍ତ୍ରୀ ବୁଢ଼ିଆଣୀ ତାକୁ ଖାଇଥାଏ । ଆଉ ଗୋଟିଏ ଘଟଣା ମଧ୍ୟ ପର୍ଯ୍ୟବେକ୍ଷଣ କରାଯାଇଛି ଯେ ବୁଢ଼ିଆଣୀ ଶ୍ରେଣୀର ପ୍ରାଣୀମାନଙ୍କ କ୍ଷେତ୍ରରେ ଜୀବନ୍ତ

ଅବସ୍ଥାରେ ପରସ୍ପରକୁ ଖାଇବା (Cannibalism)ର ଦୃଷ୍ଟାନ୍ତ । ତେଣୁ ଉପରୋକ୍ତ ଦୁଇଟି ଘଟଣା ଅର୍ଥାତ୍ ଗୋଟିଏ ପୁରୁଷର ଅନେକ ସ୍ତ୍ରୀ ବୁଢ଼ିଆଣୀ ସହ ମିଳନ ଓ ପରସ୍ପରକୁ ଖାଇବାର ସ୍ୱଭାବ ହିଁ ପୁରୁଷ ବୁଢ଼ିଆଣୀ ମୃତ୍ୟୁର ଆଲୋଚନାକୁ ଜ୍ୱଳନ୍ତ କରିଥାଏ । ବିଶେଷକରି ଏ କଥାଟି ସବୁ ବୁଢ଼ିଆଣୀଙ୍କ କ୍ଷେତ୍ରରେ ଦେଖାଯାଉଥିଲେ ବି କଳା ବିଧବା ବୁଢ଼ିଆଣୀ କ୍ଷେତ୍ରରେ କେମିତି ବିଶ୍ୱାସ କରାଯାଇ ନାମକରଣ ହୋଇଯାଇଛି । ଅବଶ୍ୟ ଏହା ଏକ ବିଶ୍ୱାସଜନିତ ନାମକରଣ । ପ୍ରକୃତରେ ତାହା ନୁହେଁ ।

ଲଣ୍ଡନ ପ୍ରାଣିଉଦ୍ୟାନ (London Zoo)ରେ ଏ ପ୍ରକାର କଳା ବିଧବା ବୁଢ଼ିଆଣୀ ବହୁ ସଂଖ୍ୟାରେ ଅନେକ ବର୍ଷ ହେଲା ପ୍ରଜନନ କରାଯାଇ ବଂଶବୃଦ୍ଧି କରାଯାଇଥିଲା । ପ୍ରତ୍ୟେକ ପୁରୁଷ ବୁଢ଼ିଆଣୀ ଅନେକଥର ମିଳନ କରାଯାଇଥିଲେ ମଧ୍ୟ ସେମାନଙ୍କୁ ସ୍ତ୍ରୀ ବୁଢ଼ିଆଣୀ ନ ଖାଇବାର ଦେଖାଯାଇଥିଲା । ତେଣୁ ମିଳନ ପରେ ସ୍ତ୍ରୀ ବୁଢ଼ିଆଣୀ ପୁରୁଷକୁ ସଂପୂର୍ଣ୍ଣ ଭାବରେ ଖାଇବା ଠିକ୍ ନ ହୋଇପାରେ । ଅବଶ୍ୟ ପରିସ୍ଥିତିରେ ଖାଇବାକୁ ଏଡ଼ାଇ ଦିଆଯାଇ ନ ପାରେ ।

## ବିସ୍ତୃତି ଓ ଶରୀର ଗଠନ

କଳା ବିଧବା ବୁଢ଼ିଆଣୀ ପୃଥିବୀର ଉଷ୍ଣମଣ୍ଡଳୀୟ ଅଞ୍ଚଳରେ ଦେଖାଯାଏ । ବିଶେଷକରି ଉତ୍ତର ଆମେରିକାରେ ଏମାନଙ୍କ ସଂଖ୍ୟା ବେଶି । ଅଷ୍ଟପଦୀ ଶ୍ରେଣୀ (Class-Arachnida)ର ଏ ବୁଢ଼ିଆଣୀ ବଂଶ (Family-Theridiidae) ଅନ୍ୟ ବୁଢ଼ିଆଣୀମାନଙ୍କଠାରୁ ଅଲଗା । ଅନେକ ପ୍ରକାର କଳା ବିଧବା ବୁଢ଼ିଆଣୀ ପୃଥିବୀରେ ଦେଖାଗଲେ ହେଁ ସବୁଠାରୁ ସାଧାରଣ ପ୍ରକାର *(Latrodectus mactans)*ର ଶରୀର ବଡ଼ ଅଦ୍ଭୁତ । ସ୍ତ୍ରୀ ବୁଢ଼ିଆଣୀର ଲମ୍ବ ଅଧଇଞ୍ଚ ଓ ଭେଲ୍‌ଭେଟ୍ ପରି ମଚ୍‌ମଚ୍ କଳା ଶରୀରଟିର ପେଟପାଖରେ ଲାଲ୍‌ବର୍ଣ୍ଣର ସୂର୍ଯ୍ୟଘଡ଼ି ଆକାରଟି ଅତି ଭୟଙ୍କର ଦେଖାଯାଏ । ପେଟପାଖଟି ପ୍ରାୟ ଗୋଲାକାର ! ପୁରୁଷର ଆକାର ସ୍ତ୍ରୀ ଆକାର ଠାରୁ ଯଥେଷ୍ଟ ସାନ । ସ୍ତ୍ରୀ ବୁଢ଼ିଆଣୀର ଆକାର ଓ ବର୍ଣ୍ଣ ଏପରି ଯେ ସେ ଅନୁସାରେ ତାହାର ନାମ ବି ଭିନ୍ନ ଭିନ୍ନ କରାଯାଇଛି । ତେଣୁ କଳା ବିଧବା ବୁଢ଼ିଆଣୀର ଅନ୍ୟ ନାମଗୁଡ଼ିକ ହେଉଛି ଜୋତା ବୋତାମ ବୁଢ଼ିଆଣୀ (Shoe-button Spider), ଲାଲ ଚିହ୍ନ ବୁଢ଼ିଆଣୀ, ଅଶ୍ୱାରୋହୀ ବୁଢ଼ିଆଣୀ (Jockey Spider) ଏବଂ ସୂର୍ଯ୍ୟଘଡ଼ି ଆକାରର ଲାଲ ଚିହ୍ନ ଥିବାରୁ ସମୟ-କାଚ ବୁଢ଼ିଆଣୀ (Hour-glass Spider) । ଗୋଡ଼ ଆଠଟି ଅନ୍ୟ ବୁଢ଼ିଆଣୀମାନଙ୍କ ପରି ବେଶ୍ ଲମ୍ବ ଲମ୍ବ । ମୁଣ୍ଡପାଖରେ ଦଂଶକ (Fang) ହିଁ ଦୁଇକଡ଼ରେ ଗୋଟିଏ କରି ରହିଥାଏ । ସମୁଦାୟ ଶରୀରଟି ଆଂଶୁଯୁକ୍ତ ହୋଇଥାଏ । ଉତ୍ତର-ଆମେରିକାର ବୁଢ଼ିଆଣୀମାନଙ୍କ ଅପେକ୍ଷା ଦକ୍ଷିଣଆମେରିକାର କଳାବିଧବା ବୁଢ଼ିଆଣୀ ବେଶି ବିଷାକ୍ତ ।

## କଳା ବିଧବା ବୁଢ଼ିଆଣୀର ଶିକାର ପ୍ରଣାଳୀ

ପ୍ରତ୍ୟେକ ବୁଢ଼ିଆଣୀ ଗୋଟିଏ ଗୋଟିଏ ଦକ୍ଷ ଶିକାରୀ ଭାବରେ ପରିଚିତ । ଏ କଳା ବିଧବା ବୁଢ଼ିଆଣୀ ସେଥିରୁ ବା ବାଦ୍ ପଡ଼ିବ କିପରି ? ନିଜ ଜାଲ ଭିତରେ ସବୁବେଳେ ଚୁପ୍‌ଚାପ୍ ଛକି ବସିଥାଆନ୍ତି କେତେବେଳେ ଶିକାରଟିଏ ଆସି ପାଖରେ ପହଞ୍ଚିବ । ଏମାନଙ୍କର ଜାଲ ମୋଟା ଓ ଅନିୟମିତ ଭାବରେ ତିଆରି । ସ୍ତ୍ରୀ ବୁଢ଼ିଆଣୀର ଜାଲ ପୁରୁଷ ଅପେକ୍ଷା ବଡ଼ । ଜାଲଗୁଡ଼ିକ ମୁଖ୍ୟତଃ ଏମାନେ ମାଟିତଳ, ଭଙ୍ଗା ପରିତ୍ୟକ୍ତ ଘର, କୋଠାଘର, ପାହାଚତଳେ, ଅବ୍ୟବହୃତ ସ୍ଥାନ ଓ ଗଦା ହୋଇଥିବା ମଇଳା ଅପରିଷ୍କାର ସ୍ଥାନରେ ତିଆରି କରିଥାଆନ୍ତି । ଏପରିକି ପୁରୁଣା ପାଇଖାନାଗୁଡ଼ିକରେ ବି ଏମାନଙ୍କ ଜାଲ ଦେଖାଯାଏ ।

ଜଣାଯାଏ ଯେ ପୁରୁଣା ପାଇଖାନାଗୁଡ଼ିକରେ ଅନେକ ମନୁଷ୍ୟ ଏ ବୁଢ଼ିଆଣୀମାନଙ୍କ ଦ୍ୱାରା ଆକ୍ରମଣିତ ହୋଇଥାଆନ୍ତି । ୧୭୨୬ ମସିହାରୁ

୧୯୪୩ ମସିହା ପର୍ଯ୍ୟନ୍ତ ୨୧୭ ବର୍ଷ ମଧ୍ୟରେ ଆମେରିକାରେ ୧୨୯୧ ଜଣ ଏ ବୁଢ଼ିଆଣୀର ଶିକାର ହୋଇଥିଲେ । ଆଉ ଏଥି ମଧ୍ୟରୁ ୫୫ ଜଣଙ୍କ ଅବସ୍ଥା ମାରାତ୍ମକ ହୋଇଥିଲା । ଅର୍ଥାତ୍ ଏଥିରୁ ଜଣାଯାଇଛି ଯେ ପ୍ରତି ଚାରିବର୍ଷରେ ଗୋଟିଏ ମୃତ୍ୟୁ ହେବା ସ୍ଥଳେ ବର୍ଷକୁ ପ୍ରାୟ ଛଅ ଜଣ କ୍ଷତବିକ୍ଷତ ହୁଅନ୍ତି । ଏ ଆକ୍ରମଣର ଶିକାର ହୋଇଥାଆନ୍ତି ଗାଁଗହଳି ଲୋକ, ପିଲା ଓ ଅଜଣା ଲୋକମାନେ । ଏ ବୁଢ଼ିଆଣୀର ବିଷ ସ୍ନାୟବିକ (Neurotoxin) ବୋଲି ଜଣାଯାଇଛି । ତେଣୁ ସ୍ନାୟୁ ପ୍ରଭାବିତ ହୋଇଥାଏ; ଯାହାଫଳରେ ଖୁବ୍ ଯନ୍ତ୍ରଣା, ମାଂସପେଶୀୟ କଷ୍ଟ, ରକ୍ତଚାପ ବୃଦ୍ଧି ଓ ପକ୍ଷାଘାତ (Paralysis) ସମସ୍ୟା ଆଦି ସୃଷ୍ଟି ହୋଇଥାଏ । ବିଶେଷକରି ସ୍ତ୍ରୀ ବୁଢ଼ିଆଣୀଗୁଡ଼ିକର ବିଷ ପରିମାଣ ବେଶି ଓ ସେଥିପାଇଁ ଅତ୍ୟଧିକ ମାରାତ୍ମକ ମଣିଷମାନଙ୍କ ପାଇଁ ବି ।

ବୁଢ଼ିଆଣୀଗୁଡ଼ିକ ସାଧାରଣତଃ ବିଷାକ୍ତ । ଗୋଟିଏ ପରିବାରର ବୁଢ଼ିଆଣୀମାନଙ୍କୁ ବାଦ୍‌ଦେଲେ ଅନ୍ୟ ସମସ୍ତଙ୍କର ବିଷଗ୍ରନ୍ଥି (Poison Gland) ଥାଏ । ଏ ବିଷଗ୍ରନ୍ଥି ବକ୍ଷ ବା ଛାତି ବା ଶିରୋବକ୍ଷ ସ୍ଥାନରେ ରହିଥାଏ । ବିଷଗ୍ରନ୍ଥିରୁ ବିଷନଳୀ (Duct) ଦେଇ ବିଷଦାନ୍ତ (Fang) କୁ ଆସିଥାଏ । କଳା ବିଧବା ବୁଢ଼ିଆଣୀର ବିଷ ଅନ୍ୟ ବିଷାକ୍ତ ବୁଢ଼ିଆଣୀମାନଙ୍କ ପରି ପ୍ରାୟ ଛୋଟ ଛୋଟ ପ୍ରାଣୀମାନଙ୍କ ପାଇଁ ସହଜରେ ମାରାତ୍ମକ ହୋଇଥାଏ । ଆଉ ଏ ପ୍ରାଣୀଗୁଡ଼ିକ ମୁଖ୍ୟତଃ କୀଟ ଓ ପତଙ୍ଗାଦି ପ୍ରାଣୀ । ଛୁରୀ ଭୁସିବା ପରି ଏ ବୁଢ଼ିଆଣୀ ଦଂଶକ ବା ବିଷଦାନ୍ତ ଦୁଇଟିକୁ ଶିକାର ଶରୀରରେ ଫୋଡ଼ିଦେଇ ବିଷ ପ୍ରୟୋଗ କରିଥାଏ । ଶିକାର ପ୍ରାଣୀ ବିଷଯୋଗୁଁ ମରିଯିବା ପରେ ତା' ଶରୀରରୁ ତରଳ ପଦାର୍ଥ ଶୋଷି ବୁଢ଼ିଆଣୀ ବଞ୍ଚିଥାଏ ।

ଏହାର ଶିକାର ପ୍ରଣାଳୀ ବଡ଼ ଅଦ୍ଭୁତ ରକମର । କୀଟଟି ଉଡ଼ିଯାଉଥିବା ବେଳେ ଅକସ୍ମାତ୍ ବୁଢ଼ିଆଣୀ ଜାଲରେ ପଡ଼ିଗଲେ ଆଉ ସହଜରେ ବାହାରି ଯାଇପାରେ ନାହିଁ । ତେବେ ଖସିଯିବାପାଇଁ ଉଦ୍ୟମ



କଳା ବିଧବା ବୁଢ଼ିଆଣୀ ପିମ୍ପୁଡ଼ିକୁ ମାରି ତା ଜାଲରେ ଆବଦ୍ଧ କରୁଛି



ପିମ୍ପୁଡ଼ିକୁ ଜାଲରେ ଆବଦ୍ଧ କରି ଓ ଦଂଶକରେ ଫୋଡ଼ି କଳା ବିଧବା ବୁଢ଼ିଆଣୀର ବିଷ ପ୍ରୟୋଗ

କଲାବେଳେ ବୁଢ଼ିଆଣୀ ଜାଲ ହଲଚଲ ହୋଇଥାଏ । ଏପରି ଅବସ୍ଥାକୁ ବୁଢ଼ିଆଣୀ ଗୋଡ଼ଦ୍ୱାରା ଭଲଭାବରେ ଠଉରେଇପାରେ ଯେ ହାବୁଡ଼ରେ ଗୋଟିଏ କିଏ ପଡ଼ିଯାଇଛି । ତେଣୁ ବୁଢ଼ିଆଣୀ ହଠାତ୍ ଦଉଡ଼ିଯାଇ ପଛଗୋଡ଼ରେ ପ୍ରାଣୀକୁ ଜାବୁଡ଼ି ଧରି ପଛପାଖ ରେଶମ ଗ୍ରନ୍ଥି (Silk Gland)ରୁ ରେଶମ ନିର୍ଗତ କରି ଛନ୍ଦି ପକାଏ ଶିକାର ଚାରିପଟେ । ତେଣୁ ଶିକାର ସହଜରେ ଜାଲରୁ ଆଦୌ ଖସିଯିବାର ପ୍ରଶ୍ନ ଉଠେ ନାହିଁ । ଜାଲରେ ଶିକାର ସୁରକ୍ଷିତ ହୋଇଥାଏ ଏବଂ ଅଚଳ ମଧ୍ୟ ହୋଇଯାଏ । ଶିକାରଟି ଜାଲ ଦ୍ୱାରା ଆବଦ୍ଧ ହୋଇଗଲା ପରେ ସ୍ଥିର ହୋଇଯାଏ – ହଲ୍‌ଚଲ୍ ହୋଇପାରେ ନାହିଁ । ଏହି ଅବସ୍ଥାରେ ହିଁ ବୁଢ଼ିଆଣୀ ଦଂଶକ ସାହାଯ୍ୟରେ ବିଷ ନିକ୍ଷେପ କରିଥାଏ । ତେଣୁ ଶିକାରଟି ଅବଶ ହୋଇପଡ଼େ । ଏତିକିବେଳେ ଶିକାର ଶରୀର ଉପରକୁ ବୁଢ଼ିଆଣୀ ହିଁ ତା ପାଟିରୁ ଗୋଟିଏ ବା ଦୁଇ ଟୋପା ରସ (Protein splitting Ferment) ଝରାଇଥାଏ । ଫଳରେ ଏ ରସ ଶିକାରର ଶରୀରକୁ ନରମ କରିପକାଏ । ଏତିକି କାର୍ଯ୍ୟପାଇଁ ପ୍ରାୟ ଦୁଇଘଣ୍ଟା ସମୟ ଲାଗିଥାଏ । ଏ ନରମ ଶରୀରରୁ ବୁଢ଼ିଆଣୀ ତା ପରେ ସମସ୍ତ ରସକୁ



ଅଣ୍ଡାଥିବା ଗୋଲାକାର କୋଷା ସହ କଳା ବିଧବା ବୁଢ଼ିଆଣୀ

ଶୋଷି ଶୋଷି ନେଇଯାଏ । ଶୋଷିବାପାଇଁ ବୁଢ଼ିଆଣୀର ମାଂସଯୁକ୍ତ ପାକସ୍ଥଳୀ ପମ୍ପପରି କାର୍ଯ୍ୟ କରି ଶୋଷିବାରେ ସହାୟକ ହୋଇଥାଏ । ସମସ୍ତ ରସ (Soup) ଶୋଷି ହୋଇଯିବା ପରେ ଶିକାରର କେବଳ ଖୋଳପା (Husk of the prey) ଟି ରହିଯାଏ । ସେଥିପାଇଁ ବୁଢ଼ିଆଣୀ ଜାଲରେ ଅନେକ ସମୟରେ ମଲା ମାଛି ବା କୀଟପତଙ୍ଗ ଲାଗି ରହିଥିବାର ନଜରକୁ ଆସିଥାଏ । କଳା ବିଧବା ବୁଢ଼ିଆଣୀ ତା ପରେ ଶିକାରର ଖୋଳପାଟିକୁ କାଟିଦେଇ ତଳେ ପକାଇଦିଏ ଏବଂ ପୁଣି ଅପେକ୍ଷା କରୁଥାଏ ପରବର୍ତ୍ତୀ ଶିକାର କେତେବେଳେ ହାବୁଡ଼ରେ ପଡ଼ିବ ।

**ପ୍ରଜନନ ଓ ଛୁଆ**

ପୁରୁଷ ବୁଢ଼ିଆଣୀ ବଡ଼ ହୋଇଗଲା ପରେ ମିଳନ ପାଇଁ ପ୍ରସ୍ତୁତ ହୋଇଯାଏ । ମିଳନର ଠିକ୍ ପୂର୍ବରୁ ସେ ଗୋଟିଏ ଛୋଟିଆ ଜାଲ (Web) ପ୍ରସ୍ତୁତ କରି ତା'ର ପେଟପାଖକୁ ଜାଲରେ ଘଷିବାକୁ ଆରମ୍ଭ କରେ । ପେଟ ଘଷିସାରି ଶୁକ୍ର ରସ (Seminal Fluid) ଏକ ବୁନ୍ଦା ନିସୃତ କରେ । ଏ ଶୁକ୍ରରସ ବୁନ୍ଦାଟି ମୁହଁ ପାଖରେ ଥିବା ଛୋଟ ଗୋଡ଼ପରି ସ୍ପର୍ଶପାଦ (Pedipalp) ସାହାଯ୍ୟରେ ବୁଢ଼ିଆଣୀ ନେଇଆସେ । ମିଳନ ସମୟରେ ପୁରୁଷ ବୁଢ଼ିଆଣୀର ସ୍ପର୍ଶପାଦ ଧରିଥିବା ଶୁକ୍ରକୁ ସ୍ତ୍ରୀ ବୁଢ଼ିଆଣୀ ଶରୀର ଉପରକୁ ଛାଡ଼ିଦିଏ । ସ୍ତ୍ରୀ ଏ ଶୁକ୍ର (Sperm) ଗୁଡ଼ିକୁ ଶରୀରରେ



ଜାଲ ସହ କଳା ବିଧବା ବୁଢ଼ିଆଣୀ

ତା'ର ଧରିରଖି ଅନେକ ସମୟ ପର୍ଯ୍ୟନ୍ତ ବ୍ୟବହାର କରେ । ଏପରିକି ଏକମାସ ପର୍ଯ୍ୟନ୍ତ ଏ ଶୁକ୍ର ସେ ବ୍ୟବହାର କରିପାରେ । ତା'ପରେ ସ୍ତ୍ରୀ ଅଣ୍ଡାଗୁଡ଼ିକ ଏକ ରେଶମ କୋଷୀ (Silken Cocoon) ମଧ୍ୟରେ ଦିଏ, କିଛିଦିନ ପରେ ଅଣ୍ଡାଗୁଡ଼ିକ ଫୁଟି ଛୁଆ ବାହାରେ । ଛୁଆଗୁଡ଼ିକ ରଙ୍ଗ ବ୍ୟତୀତ ମାଆ ପରି ହୋଇଥାଆନ୍ତି । ଛୁଆ ବାହାରିବା ମାତ୍ରକେ ମାଆଠାରୁ ବା କୋଷାରୁ ବାହାରି ସ୍ୱାଧୀନ ଭାବରେ ଚଳପ୍ରଚଳ କରନ୍ତି । ମାଆ ଉପରେ ନିର୍ଭର କରି ନ ଥାଆନ୍ତି । ତେବେ କଳା ବିଧବା ବୁଢ଼ିଆଣୀ ପ୍ରଜନନର ବିଶେଷତ୍ୱ ହେଉଛି ଯେ ଏହାର ସ୍ପର୍ଶପାଦ ଏକ ଶୁକ୍ରଭଣ୍ଡାର (Sperm Reservoir) ହିସାବରେ କାର୍ଯ୍ୟ କରିଥାଏ ।

## କଳା ବିଧବା ବୁଢ଼ିଆଣୀର ବିଶେଷତ୍ୱ

ବୁଢ଼ିଆଣୀର ବିଭିନ୍ନ ପ୍ରକାର ବିସ୍ତୃତି ଓ ପ୍ରକାର ବାସ୍ତବିକ୍ ବିସ୍ମୟକର । ପ୍ରତ୍ୟେକଙ୍କର କିଛି ନା କିଛି ସ୍ୱତନ୍ତ୍ରତା ରହିଛି । ତେବେ କଳା ବିଧବା ବୁଢ଼ିଆଣୀର ବୈଶିଷ୍ଟ୍ୟ ହେଉଛି ତାହାର ଆକାର ଓ ଶିକାର । ବିଭିନ୍ନ ମତ ପ୍ରକାଶ ପାଇଲେ ମଧ୍ୟ ବିଧବା ଶବ୍ଦର ପ୍ରୟୋଗ ଏ ବୁଢ଼ିଆଣୀ କ୍ଷେତ୍ରରେ କେମିତି ଅଡୁଆ ମନେହୁଏ । ତେବେ ଏ ପ୍ରକାର ପରିଚିତ ନାମକରଣର କାରଣ ହିଁ ତା'ର ଶରୀରର ବର୍ଣ୍ଣ ଏବଂ ଶିକାରର ଖ୍ୟାତି । ଅର୍ଥାତ୍ ଅଣ୍ଡାଗୁଡ଼ିକର ସମାୟନ (Fertilisation) ପରେ ସ୍ତ୍ରୀ ବୁଢ଼ିଆଣୀର ପୁରୁଷକୁ ଭକ୍ଷଣ । କେବଳ ବୁଢ଼ିଆଣୀ କ୍ଷେତ୍ରରେ ଏହା ଶୁଣାଯାଏ ତାହା ନୁହେଁ, କଙ୍କଡ଼ାବିଛା କ୍ଷେତ୍ରରେ ବି

ଏହା ଦେଖାଯାଏ । ତେବେ ଏହାର ସତ୍ୟତା ବା ଯଥାର୍ଥତା କେତେଦୂର ରହିଛି ଓ କେତେ ପରିମାଣରେ ପ୍ରକୃତରେ ଘଟିଥାଏ ତାହା ଅଧିକ ଗବେଷଣା ଓ ପର୍ଯ୍ୟବେକ୍ଷଣ ଦ୍ୱାରା ହିଁ ସମ୍ଭବ ହେବ । ଆଶା କରାଯାଏ ଯେ, ପ୍ରାୟ ଅନେକ ବା ସମସ୍ତ ବୁଢ଼ିଆଣୀ ପରିବାରରେ ଏ ପ୍ରକାର ବ୍ୟବହାର କଥା ଶୁଣାଗଲେ ବା ଆଲୋଚିତ ହେଲେ ମଧ କିଛିଟା ପରୀକ୍ଷା ପ୍ରମାଣ କରିଛି ଯେ ଏହା ସବୁବେଳେ ତ ଘଟି ନାହିଁ କି ଘଟୁ ନାହିଁ । ତେଣୁ ପର୍ଯ୍ୟବେକ୍ଷଣରେ କ'ଣ କିଛି ତ୍ରୁଟି ରହିଯାଇଛି କି ? ବୁଢ଼ିଆଣୀର ଏ ପ୍ରକାର ବ୍ୟବହାର ହିଁ ଆହୁରି କିଛି ପରୀକ୍ଷା ଓ ସମୟ ହିଁ ଉତ୍ତର ଦେବ ବୋଲି ବିଶ୍ୱାସ । ସତରେ ଏ ପ୍ରକାର ପରୀକ୍ଷାପାଇଁ ବା ଗବେଷଣା ପାଇଁ ଟିକିନିଖି ଗବେଷଣାର ଫଳାଫଳ ହିଁ ଆମପାଇଁ ଠିକ୍ ଉତ୍ତର ହେବ । ତେବେ ଯାହାହେଉ କଳା ବିଧବା ବୁଢ଼ିଆଣୀ ଏକପ୍ରକାର ବିଷାକ୍ତ ବୁଢ଼ିଆଣୀ । ସମଗ୍ର ଆମେରିକାରେ ଏମାନଙ୍କର ବିସ୍ତୃତି ହେଲେ ହେଁ ଦକ୍ଷିଣ ଆମେରିକାର କଳା ବିଧବା ବୁଢ଼ିଆଣୀର ବିଷ ଅଧିକ ଉତ୍କଟ ଓ ଅଧିକ ମାରାତ୍ମକ । ଆମେରିକା ହେଉ ବା ଅଷ୍ଟ୍ରେଲିଆ ହେଉ ଅଥବା ଭାରତ ହେଉ ବୁଢ଼ିଆଣୀ ସାଧାରଣତଃ ବିଷଧର ହେତୁ ତାଙ୍କ ପ୍ରତି ସାବଧାନ ରହିବା ଆମ ସମସ୍ତଙ୍କର କର୍ତ୍ତବ୍ୟ । ଏଡ଼ିକି କ୍ଷୁଦ୍ର ପ୍ରାଣୀ ହେଲେ ବି କରାମତି କମ୍ ନୁହେଁ । ଶିକାର କୌଶଳ ବି କେଉଁ ଗୁଣରେ ଊଣା ନୁହେଁ !!



ଗଛର ଡାଳ ଉପରେ କଳା ବିଧବା ବୁଢ଼ିଆଣୀର ଜାଲ ଉପରେ ଅବସ୍ଥାନ ।

# ବୃତ୍ତଜାଲ ବୁଢ଼ିଆଣୀ

ଜ୍ୟାମିତିକୁ ଗୋଟିଏ ବିଷୟ ଭାବରେ ପିଲାମାନେ ବିଦ୍ୟାଳୟରେ ପଢ଼ନ୍ତି । ପରୀକ୍ଷାରେ ଗଣିତର ଗୋଟିଏ ଅଂଶ ଭାବରେ ପିଲାମାନେ ପରୀକ୍ଷା ଦେଇଥାଆନ୍ତି । ଆରମ୍ଭରେ ଏ ଜ୍ୟାମିତି ସୁରୁ ହୋଇଥାଏ ବିନ୍ଦୁ, ରେଖା, ତ୍ରିଭୁଜ, ଚତୁର୍ଭୁଜ, ପଞ୍ଚଭୁଜ, ଷଡ଼ଭୁଜ, ବିଭିନ୍ନ ପ୍ରକାର କୋଣ, ରମ୍ବସ୍, ଟ୍ରାପିଜିୟମ୍, ସିଲିଣ୍ଡର ଓ କୋନ୍ ଆଦିରୁ । ପରେ ପରେ ବୃତ୍ତ, ଗୋଲକ ସହ ଶିକ୍ଷାର୍ଥୀ ଅଧ୍ୟୟନ କରନ୍ତି ଉପପାଦ୍ୟ, ଅଙ୍କନ ଓ ଅନେକ ପ୍ରକାରର ଜ୍ୟାମିତିକ ପ୍ରମାଣସବୁ । କଥା ହେଲା, ପିଲାମାନେ ଗଣିତ ସହ ଜ୍ୟାମିତି ତ ଶିକ୍ଷା କରିଥାଆନ୍ତି । ଜ୍ୟାମିତି ଶିଖିବା ପରେ ବିଭିନ୍ନ ଡିଜାଇନ୍‌ର ଅଙ୍କନ ସବୁରେ ଦକ୍ଷ ହୋଇଯାଆନ୍ତି । ପିଲାମାନେ ତାଙ୍କର ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କଠାରୁ ଶିଖିବା ଯୋଗୁଁ ଜ୍ୟାମିତି ଶିକ୍ଷାରେ ସିଦ୍ଧହସ୍ତ ହୋଇଥାଆନ୍ତି । କିନ୍ତୁ ପ୍ରାଣିଜଗତ୍‌ର ଏପରି ଏକ ପ୍ରାଣୀ ଅଛି, ଯେ କି କେମିତି କାହାଠାରୁ ଜ୍ୟାମିତି ଶିଖେ ଠିକ୍ ଭାବରେ ଜଣା ନ ଥିଲେ ମଧ୍ୟ ଜ୍ୟାମିତି ତା'ର ଜୀବନରେ ପ୍ରୟୋଗ କରି ପାରିଥାଏ । ନ ଦେଖିଲେ ବିଶ୍ୱାସ କରିହେବନି ଯେ ସତରେ ଗୋଟିଏ ପ୍ରାଣୀ ଏପରି ଏକ ଡିଜାଇନ୍‌ର ଆକୃତିଟିଏ ପ୍ରସ୍ତୁତ କରିପାରେ ବୋଲି । ସେଇଟି ହେଉଛି ଗୋଟିଏ ସାମାନ୍ୟ, କଦାକାର ଓ ଛୋଟିଆ ଅମେରୁଦଣ୍ଡୀ (Invertebrate) ପ୍ରାଣୀଟିଏ । କିଏ ସେ ସିଏ ହୋଇପାରେ ? ବୁଢ଼ିଆଣୀ ସେ ପ୍ରାଣୀ । ଉଣାଅଧିକେ ବୁଢ଼ିଆଣୀ ଜାଲ ତିଆରିରେ ଦକ୍ଷ । ଆଉ ଏ ଜାଲ ବିଭିନ୍ନ କିସମର । ବିଭିନ୍ନ ପରିବାରର ବୁଢ଼ିଆଣୀ ବିଭିନ୍ନ ନକ୍‌ସାର ଜାଲ ତିଆରି କରିବାରେ ସକ୍ଷମ । ତେବେ ଜ୍ୟାମିତିକ ସୂତ୍ର ପରି ଗୋଟିଏ ପ୍ରକାର ବୁଢ଼ିଆଣୀ ତା'ର ଜାଲ ପ୍ରସ୍ତୁତ କରିବା ସତରେ ବଡ଼ ଆଶ୍ଚର୍ଯ୍ୟଜନକ । ଆଉ ଆଶ୍ଚର୍ଯ୍ୟ ହେଲେ ବି କଥାଟା ସତ । ଜାଲଟି ଦେଖିବା ପରେ ମନେହେବ ଏ ବୁଢ଼ିଆଣୀ ନିଶ୍ଚୟ ଜ୍ୟାମିତିର ନିୟମ ଅନୁସାରେ ଜାଲଟିକୁ ବା ତା'ର ଘରଟିକୁ ତିଆରି କରିଛି । ଏ ବୁଢ଼ିଆଣୀଟି କିଏ ? କ'ଣ ତା'ର ନାଁ ? କିପରି ସେ ତିଆରି କରେ ?

## ବୃତ୍ତଜାଲ ବୁଢ଼ିଆଣୀର ନାମକରଣ

ଜ୍ୟାମିତି ନିୟମ ମାନି ଜାଲ ତିଆରି କରିପାରୁଥିବା ବୁଢ଼ିଆଣୀଟି ହେଉଛି 'ବୃତ୍ତଜାଲ ବୁଢ଼ିଆଣୀ' (Orb Spider) । ଏ ବୁଢ଼ିଆଣୀ ତାଙ୍କର ଘର ବା ଜାଲଟିକୁ ଠିକ୍ ଗୋଲ ପରି ଆକାରର ତିଆରି କରିପାରୁଥିବାରୁ ଏପରି ନାମକରଣ କରାଯାଇଛି । ଆକୃତି ଏପରି ହେତୁ ଏହାକୁ 'ଜ୍ୟାମିତିକ ବୁଢ଼ିଆଣୀ' ବି କହିଲେ ଅତ୍ୟୁକ୍ତି ହେବ ନାହିଁ । ତଥାପି କେତେକ ଏହାକୁ 'ଶଗଡ଼ଚକ ବୁଢ଼ିଆଣୀ' (Cartwheel Spider) ବା 'ଜ୍ୟାମିତିକ ଜାଲ ବୁଢ଼ିଆଣୀ' (Geometric Web Spider) ବୋଲି କହିଥାଆନ୍ତି । ଅନ୍ୟ ବୁଢ଼ିଆଣୀମାନଙ୍କ ପରି ଏ ଏକ ସନ୍ଧିପଦ (Arthropoda) ପ୍ରାଣୀ ଓ ଏମାନଙ୍କ ପରିବାର ଅନ୍ୟମାନଙ୍କ ଠାରୁ ଭିନ୍ନ (Argiopidae) । ସାଧାରଣ ଭାବରେ ଏମାନଙ୍କୁ 'ବଗିଚା' ବା 'ଉଦ୍ୟାନ ବୁଢ଼ିଆଣୀ' (Garden Spider) ବୋଲି ଅଭିହିତ କରାଯାଏ । ବିଜ୍ଞାନ ଭାଷାରେ ଏହାର ନାମ ଆଉ ଏକ ପ୍ରକାର *(Argiope* ବା *Araneus diadematus)* । ମୋଟାମୋଟି ବୃତ୍ତାକାର ଜାଲ ଯୋଗୁଁ ଏହାର ନାମ ଅନେକ । ଜାଲର ବୈଶିଷ୍ଟ୍ୟ ହିଁ ଏ ବୁଢ଼ିଆଣୀକୁ ଚିହ୍ନିବାରେ ଅତି ସହଜ କରିଥାଏ ।

## ବୃତ୍ତଜାଲ ବୁଢ଼ିଆଣୀର ବିସ୍ତୃତି ଓ ଶରୀର ଗଠନ

ପୃଥିବୀର ଉଷ୍ଣମଣ୍ଡଳୀୟ ଅଞ୍ଚଳ ବୃତ୍ତଜାଲ ବୁଢ଼ିଆଣୀମାନଙ୍କର ଅତି ପ୍ରିୟ ସ୍ଥାନ । ଏମାନେ ଦକ୍ଷିଣ-ପୂର୍ବ ଏସିଆ, ୟୁରୋପ ଓ ଦକ୍ଷିଣ-ଆଫ୍ରିକାରେ

ଅନେକ ପରିମାଣରେ ଦେଖାଯାଆନ୍ତି । ବିଶେଷକରି ଏମାନଙ୍କର ରହିବା ସ୍ଥାନ ହେଉଛି ଉଦ୍ୟାନ ବା ବଗିଚା । ବୃତ୍ତଜାଲ ବୁଢ଼ିଆଣୀ ଅନେକ ପ୍ରକାର ଥିଲେହେଁ 'ୟୁରୋପୀୟ ବଗିଚା ବୁଢ଼ିଆଣୀ' (European Garden Spider) ବିଷୟରେ ଅଧିକ ଜଣଯାଏ । ବୃତ୍ତଜାଲ ବୁଢ଼ିଆଣୀ କ୍ଷେତ୍ରରେ ସ୍ତ୍ରୀ ଓ ପୁରୁଷ ବୁଢ଼ିଆଣୀ ସହଜରେ ବାରି ହୋଇଯାଏ । ସ୍ତ୍ରୀ ବୁଢ଼ିଆଣୀର ଲମ୍ବ ଅଧଇଞ୍ଚ ହେବା ସ୍ଥଳେ ପୁରୁଷର ଲମ୍ବ ସ୍ତ୍ରୀ ଲମ୍ବର ଅଧା । ତେଣୁ ଆକୃତିରେ ପୁରୁଷ ସ୍ତ୍ରୀ ଠାରୁ ଅନେକ ସାନ । ଗୋଡ଼ ଆଠଟି ଅନ୍ୟ ପରିବାରର ବୁଢ଼ିଆଣୀମାନଙ୍କ ଗୋଡ଼ ତୁଳନାରେ ବି ଛୋଟ । ଶରୀରଟି ଅଣ୍ଡା ଆକାର । ଉପରିଭାଗଟି ଚଉଡ଼ା ଓ ପଛଅଂଶଟି ମୁନିଆ । ବର୍ଣ୍ଣ ଈଷତ୍ ହଳଦିଆ ବା ଗାଢ଼ ଧୂସର । ପେଟଟିରେ ବିଭିନ୍ନ ପ୍ରକାର ଚିତ୍ର ହେବାପରି ଦେଖାଯାଏ । ଅର୍ଥାତ୍ କେତେକଙ୍କ ପେଟରେ ଦାଗ ଦାଗ ଚିହ୍ନ ଥିବାବେଳେ ଆଉ କେତେକଙ୍କର ପେଟରେ ଧଳା, ହଳଦିଆ ବା ଧୂସର ବର୍ଣ୍ଣର ଛାପିଛାପିକା ଦାଗ ରହିଥାଏ । ଅତି ସାଧାରଣ ଦାଗଥିବା ବୁଢ଼ିଆଣୀର ବୈଶିଷ୍ଟ୍ୟ ହେଉଛି ପାଞ୍ଚଟି ଗୋଲାକାର ଦାଗ ଏକାଠି ରହି ଛକପରି (x) ଏକ ଆକାରର ସୃଷ୍ଟି । ଏପରି ଦାଗ ଲମ୍ବିଯାଇ ଧାଡ଼ିଏ ଦାଗ ବା ଅଣ୍ଡାକୃତି ଚିହ୍ନ ମଧ୍ୟ କେତେକ ବୁଢ଼ିଆଣୀଠାରେ ଥିବାର ନଜରକୁ ଆସିଥାଏ । ଏଭଳି ସୁନ୍ଦର ଚିହ୍ନଥିବା ଯୋଗୁଁ ଏ ପ୍ରକାର ବୃତ୍ତାକାର ଜାଲ ବୁଢ଼ିଆଣୀକୁ କୁହାଯାଏ 'ରତ୍ନଖଚିତ ଉଦର ବୁଢ଼ିଆଣୀ' (Diadem Spider) ବିଶେଷକରି ଛାପିଛାପିକା ଦାଗଗୁଡ଼ିକ ବଡ଼ରୁ ସାନ କ୍ରମେ ସଜାହୋଇ ମୁକୁଟ ପରି ଦେଖାଯାଏ ବୋଲି ଏହାକୁ ମଧ୍ୟ 'ମୁକୁଟ ବୁଢ଼ିଆଣୀ' ବା 'ଛକ ବା କ୍ରୁଶ ବୁଢ଼ିଆଣୀ' (Cross Spider) ବୋଲି ନାମିତ କରାଯାଇଥାଏ । ବିଚିତ୍ର ଶରୀର ଯୋଗୁଁ ନାମକରଣ ବି ବିଚିତ୍ର । ହଳଦିଆ ଶରୀରଯୁକ୍ତ ବୁଢ଼ିଆଣୀ ଗୋଡ଼ଗୁଡ଼ିକର ମଝିରେ ମଝିରେ କଳାପଟା ପରି ଦାଗ ମଧ୍ୟ ରହିଥାଏ । ଗୋଡ଼ଗୁଡ଼ିକ ଆଂଶୁରେ ପୂର୍ଣ୍ଣ ଓ ଆଂଶୁଗୁଡ଼ିକ ବେଶ୍ ସ୍ପଷ୍ଟ ।

### ବୃତ୍ତଜାଲ ବୁଢ଼ିଆଣୀର ଜାଲ ତିଆରି

ଅଧିକାଂଶ ବୁଢ଼ିଆଣୀମାନଙ୍କ ପ୍ରକୃତି ହେଉଛି ଜାଲ ତିଆରି କରିବା । ଆଉ ସେ ଜାଲ ହିଁ ସେମାନଙ୍କର



ବୃତ୍ତଜାଲ ବୁଢ଼ିଆଣୀର ମୁଦ୍ରାପରି ଚିତ୍ରିତ ଶରୀର



'ଉଚାଳ ବୁଢ଼ିଆଣୀର ଜାଲ ତିଆରି



ଶିଶିର ବିନ୍ଦୁ ପଡ଼ି ମୁକ୍ତା ପରି ଦେଖାଯାଉଥିବା ବୃତ୍ତଜାଲ ବୁଢ଼ିଆଣୀର ଗୋଲାକାର ଜାଲ ଓ କେନ୍ଦ୍ରରେ ବୃତ୍ତଜାଲ ବୁଢ଼ିଆଣୀର ଅବସ୍ଥାନ

ଘର ଓ ଶିକାର ସ୍ଥାନ । ଜାଲକୁ ବୁଢ଼ିଆଣୀମାନେ ତାଙ୍କ ପେଟ ପାଖରେ ଥିବା ଜାଲଗ୍ରନ୍ଥି (Spinnerets) ଦେଇ ବାହାରକୁ ବାହାର କରି ତିଆରି କରିଥାଆନ୍ତି । ଏ ଗ୍ରନ୍ଥିଗୁଡ଼ିକ ପେଟର ଠିକ୍ ଶେଷ ଭାଗରେ ରହିଥାଏ । ବୃତ୍ତଜାଲ ବୁଢ଼ିଆଣୀ ଜାଲ ତିଆରି ଆରମ୍ଭ କଲାବେଳେ ପ୍ରଥମେ ବାହାରେ ଏକ ଫାଶ ପରି ଜାଲ ତିଆରି କରେ ଏବଂ ପ୍ରଥମ ନିସ୍ସୃତ ଜାଲଟିକୁ 'ବନ୍ଧ ଜାଲ' (Bridge Thread) ବୋଲି କୁହାଯାଏ । ଏ ସୂତାଟି ସବୁଠାରୁ ଉପରେ ଲମ୍ବ ଭାବରେ ରହିଥାଏ । ତା'ପରେ ଏହାକୁ ଲଗାଇ ଦୁଇକଡ଼ରେ ଦୁଇଟି ସୂତା ତିଆରି କରେ । ବେଳେବେଳେ ଚତୁର୍ଥ ସୂତାଟି ନିର୍ଗତ କରି ଏକ ଚତୁର୍ଭୁଜ ପରି କ୍ଷେତ୍ର ତିଆରି କରେ । କିନ୍ତୁ ବେଳେବେଳେ ଚତୁର୍ଥ ସୂତା ବା ଜାଲଟିକୁ ତିଆରି ନ କରି ତ୍ରିଭୁଜ ଆକାରର କ୍ଷେତ୍ରପରି ଆକାର ତିନୋଟି ସୂତାକୁ ନେଇ କରେ ବା ବେଳେବେଳେ ବହୁଭୁଜ କ୍ଷେତ୍ର (Polygonal) ମଧ୍ୟ ପ୍ରସ୍ତୁତ କରିଥାଏ । ଏପରି ଏକ କ୍ଷେତ୍ରକୁ ଫ୍ରେମ୍ ପରି କରି ତା'ର ଏକ କେନ୍ଦ୍ରସ୍ଥଳ ବା ଚକର ନାଭି (Hub) ପରି ଏକ ଆକାର ତିଆରି ହୁଏ । ଏ ନାଭିସ୍ଥଳରୁ ଚାରିଆଡ଼କୁ ଲମ୍ବ ଲମ୍ବ ହୋଇ ସୂତା ବାହାର କରି (Radial Threads) ଜାଲପରି ଆକାର ତିଆରି ହୋଇଥାଏ । ଏପରି ଜାଲଟି ତିଆରି ହୋଇଥାଏ ସାଧାରଣଃ ପରସ୍ପରକୁ ଲାଗିଯାଉ ନ ଥିବା ରେଶମ ସୂତାରେ । ଏପରି ଲାଗିଯାଉ ନ ଥିବା ରେଶମ ସୂତାକୁ ସେ ବ୍ୟବହାର କରି ବା ତା' ଉପରେ ଯିବାଆସିବା କରି ତିଆରି କରେ ଅଠାଳିଆ ସୂତା (Sticky Snare) । ଆଉ ଏ ଅଠାଳିଆ ସୂତା ଗୋଲାକାର ଭାବରେ ତିଆରି କରି ଜାଲଟିକୁ ସଂପୂର୍ଣ୍ଣ କରେ । ତା'ପରେ ଜାଲର ଆକୃତି ସ୍ପଷ୍ଟ ଗୋଲାକାର ଜଣାପଡ଼େ । ଅର୍ଥାତ୍ ଜାଲର ଗୋଲ ସୂତାଗୁଡ଼ିକ ଅଠାଳିଆ ।

## ବୃତ୍ତାକାର ଜାଲ ବୁଢ଼ିଆଣୀର ଶିକାର

ବୁଢ଼ିଆଣୀ ଗୋଟିଏ ଅତି ଚାଲାକ ଶିକାରୀ ପ୍ରାଣୀ । ଲୁଚିଛପି ଚୁପ୍‌ଚାପ୍ ରହି ସେ ଅତି ଭଲ ଭାବରେ ଶିକାର କରି ଖାଇପାରେ । ଜାଲ ତିଆରି କରିସାରିବା ପରେ ବୁଢ଼ିଆଣୀ ଜାଲକୁ ଛାଡ଼ି କୌଣସି ଏକ ସ୍ଥାନରେ ଲୁଚି ରହିଯାଏ । ପତ୍ର ତଳେ ବା ଗଛଗଣ୍ଡି ଆଦି ସ୍ଥାନ, ଯାହାକି ବୁଢ଼ିଆଣୀ ଜାଲ (Web)ର ବାହାର ଫାଳ (Scaffolding)ଠାରୁ ଦୂରରେ ଥାଏ । କୀଟ ଓ ପତଙ୍ଗ ତ' ଏମାନଙ୍କର ଖାଦ୍ୟ । ତେଣୁ ଏପରି କୌଣସି ପ୍ରାଣୀ ଜାଲର ଫାନ୍ଦରେ ପଡ଼ି ଛଟପଟ ହୋଇ ବାହାରିବା ପାଇଁ ଚେଷ୍ଟା କରୁଥିବା ସମୟରେ ବୁଢ଼ିଆଣୀ ଜାଲର ତରଙ୍ଗରୁ ଜାଣିପାରେ ଯେ କିଏ ଗୋଟିଏ ତା' ଜାଲରେ ଲାଖିଯାଇଛି । ଏତିକିବେଳେ ସେ ଆସି ଶିକାରର ଚାରିପଟେ ରେଶମ ସୂତା ଝରାଇ ତାକୁ ଆବଦ୍ଧ କରିଦିଏ ।



ବୃତ୍ତଜାଲ ବୁଢ଼ିଆଣୀର ସୁନ୍ଦର ଜ୍ୟାମିତିକ ଗୋଲାକାର ଜାଲ

ପ୍ରାଣୀଟି ଗତିହୀନ ହୋଇଗଲେ ବୁଢ଼ିଆଣୀ ତା'ର ବିଷଦାନ୍ତ (Fang) ବା ମୁଣ୍ଡପାଖରେ ଥିବା ଦଂଶକ (Chelicerae) ସାହାଯ୍ୟରେ ବିଷ ପ୍ରୟୋଗ କରେ ଠିକ୍ ଇଂଜେକ୍‌ସନ୍ ଛୁଞ୍ଚିରେ ଇଂଜେକ୍‌ସନ୍ ଦେବା ପରି । ଏ ବିଷ ଶିକାରକୁ ଅଚଳ କରିବା ସହ ପାଚକ ରସ (Digestive Juice) ପରି କାର୍ଯ୍ୟ କରିବାରୁ ଶିକାରର ଶରୀରର ଅଂଶଗୁଡ଼ିକୁ ତରଳ କରିପକାଏ । ତା'ପରେ ବୁଢ଼ିଆଣୀ ତା'ର ବିଷଦାନ୍ତ ବା ଦଂଶକକୁ ଶିକାରର ଶରୀର ମଧ୍ୟକୁ ପୂରାଇ ତରଳ ପଦାର୍ଥଗୁଡ଼ିକୁ ଶୋଷି ଶୋଷି ଖାଇନିଏ । କୀଟପତଙ୍ଗ ପ୍ରଧାନ ଖାଦ୍ୟ ହେଲେହେଁ ବଡ଼ ବଡ଼ ବୁଢ଼ିଆଣୀଗୁଡ଼ିକ ଅତି ଛୋଟ ଛୋଟ ପକ୍ଷୀ ଓ ବାଦୁଡ଼ିମାନଙ୍କୁ ମଧ୍ୟ ଜାଲରେ ପଡ଼ିଗଲେ ଶୋଷି ଖାଇଥାଆନ୍ତି । ଏକପ୍ରକାର କ୍ରାନ୍ତିମଣ୍ଡଳୀୟ (Tropical) ବୁଢ଼ିଆଣୀ *(Nephila)* ପାଖାପାଖି ଗଛ ଦୁଇଟି ମଧ୍ୟରେ ଜାଲ ତିଆରି କରିବାର ଦେଖାଯାଏ । ଏପରି ଜାଲର ଆକାର ହୋଇଥାଏ ପ୍ରାୟ ଆଠଫୁଟ ଲମ୍ବ । ରେଶମ ସୂତା ଏ ଜାଲର ଅତି ମୋଟା ଓ ଖୁବ୍ ଶକ୍ତ । ଦକ୍ଷିଣପୂର୍ବ ଏସିଆର କେତେକ ସ୍ଥାନରେ ସ୍ଥାନୀୟ ଲୋକମାନେ ଏ ପ୍ରକାର ମୋଟା ଓ ଶକ୍ତ ରେଶମ ସୂତାକୁ ମାଛଧରା ଜାଲ ଓ ଆଉ କେତେକ କାର୍ଯ୍ୟରେ ବ୍ୟବହାର କରିଥାଆନ୍ତି । ଏଥିରୁ ଏ ସୂତା କେତେ ଶକ୍ତ ଅନୁମାନ କରାଯାଇପାରେ ।

## ରେଶମ କୋଷା, ଅଣ୍ଡା ଓ ଛୁଆ

ଅଣ୍ଡା ଦେଇ ଛୁଆ ହେବା ବୁଢ଼ିଆଣୀ ପରିବାରର ସାଧାରଣ କଥା । ଅଣ୍ଡା ଦେବା ପୂର୍ବରୁ ସେମାନେ ମୁହାଁମୁହିଁ ହୋଇଥାଆନ୍ତି ଓ ତା'ପରେ ମିଳନ ଘଟିଥାଏ । ବୃତ୍ତାକାର ଜାଲ ବୁଢ଼ିଆଣୀ ଶରତ ଋତୁରେ ଅଣ୍ଡା ଦେଇଥାଏ । ଆଉ ଅଣ୍ଡାଗୁଡ଼ିକ ସୁରକ୍ଷିତ ଅବସ୍ଥାରେ ରହିଥାଏ ଏକ ରେଶମୀ କୋଷା ମଧ୍ୟରେ । ଏ କୋଷା ଦେଖିବାକୁ ଅଣ୍ଡାକୃତି ଓ ସୁନାପରି ହଳଦିଆ ବର୍ଣ୍ଣ । ଲମ୍ବ ପ୍ରାୟ ଦେଢ଼ଇଞ୍ଚ । ଏତେ ଛୋଟ ଦେଢ଼ଇଞ୍ଚ କୋଷାରେ ରହିଥାଏ



ଜାଲ ଉପରେ ପୁରୁଷ ଓ ସ୍ତ୍ରୀ ବୃତ୍ତଜାଲ ବୁଢ଼ିଆଣୀ ମୁହାଁମୁହିଁ
ବାମ ପାର୍ଶ୍ବରେ ପୁରୁଷ ଓ ଡାହାଣ ପାର୍ଶ୍ବରେ ସ୍ତ୍ରୀ ବୁଢ଼ିଆଣୀ

୬୦୦ରୁ ୮୦୦ ଅଣ୍ଡା । କୋଷାଗୁଡ଼ିକ ବଡ଼ ବଡ଼ ପତ୍ରତଳେ ବା ଘରର ଏରୁଣ୍ଡି ବନ୍ଧ କଡ଼ରେ ମୁହଁମାଡ଼ି ପଡ଼ି ରହିଥିବା ଫୁଲକୁଣ୍ଡରେ ଅଥବା ସେପରି ଏକ ନିରାପଦ ଅବ୍ୟବହୃତ ସ୍ଥାନରେ ରହିଥାଏ । ଅଣ୍ଡାଗୁଡ଼ିକ ଫୁଟିବା ଆରମ୍ଭ ହୁଏ ଠିକ୍ ଗ୍ରୀଷ୍ମଋତୁ ଶେଷ ଭାଗକୁ । ଛୁଆଗୁଡ଼ିକ ଫୁଟି ବାହାରିବା ପରେ ସେମାନେ ଏକାଠି ମିଶି ଆଖିକୁ ଦେଖାଯାଉ ନ ଥିବା ରେଶମ ସୂତା ବାହାର କରି ଏକ ଛୋଟ ଜାଲ ତିଆରି କରନ୍ତି । ସୂତାଗୁଡ଼ିକ ଏତେ ସୂକ୍ଷ୍ମ ହୋଇଥାଏ ଯେ ଆମ ଆଖିକୁ ସହଜରେ ଦେଖାଯାଏ ନାହିଁ । ଏପରି ଏକ ଜାଲ ତିଆରି କରି ଛୁଆଗୁଡ଼ିକ ଏକାଠି ଜାଲ ମଝିରେ ବଲ୍‌ପିଣ୍ଡୁଳା ପରି ରହିଥାଆନ୍ତି । ସାମନା ଏପଟ ସେପଟ ବା ଜାଲ ହଲିବାର ଆଭାସ ପାଇଲେ ଛୁଆଗୁଡ଼ିକ ଏଣେତେଣେ ବିକ୍ଷିପ୍ତ ହେବାର ଦେଖାଯାଏ । ଆଉ ସେମାନେ ନିମିଷକ ମଧ୍ୟରେ ଖୁବ୍ ଜୋର୍‌ରେ ଚାଲିଯାଇ ଆଖି ଆଗରୁ ଲୁଚି ଯାଆନ୍ତି । ତା'ପରେ ବିପଦର ଆଭାସ ଚାଲିଗଲେ ଛୁଆଗୁଡ଼ିକ ପୁନର୍ବାର ଏକାଠି ହୋଇଯାଆନ୍ତି ସେମାନେ ତିଆରି କରିଥିବା କୁନି ଜାଲ ମଧ୍ୟରେ । ଏପରି ଭାବରେ ସେମାନେ ଏକାଠି ରୁହନ୍ତି କିଛିଦିନ । ତା'ପରେ ସେମାନେ ଧୀରେ ଧୀରେ ସ୍ୱାଧୀନ ଭାବରେ ଚାଲିଯାଇ ସାଧାରଣ ଜୀବନଯାପନ ଆରମ୍ଭ କରନ୍ତି । ଛୁଆମାନଙ୍କର ଏ ଜାଲର ଜ୍ୟାମିତିକ ମାପ ଠିକ୍ ନ ଥାଏ ।

ପ୍ରତ୍ୟେକ ଛୁଆ ଧୀରେ ଧୀରେ ଗୋଟିଏ ନୂଆ ସ୍ଥାନ ବାଛିନିଅନ୍ତି । ସ୍ଥାନ ବାଛି ତିଆରି କରନ୍ତି ତାଙ୍କର ଜାଲ । ଏ ଜାଲର ମାପ ବା ନକ୍ସା ଠିକ୍ ନ ଥାଏ । ଆକାର ହୁଏ ପ୍ରାୟ ଦୁଇ ଇଞ୍ଚ । କିନ୍ତୁ ଦେଖିବାକୁ

ଛୋଟିଆ ଶଗଡ଼ ଚକ ପରି । ଏହି ସମୟରେ ପୁରୁଷ ଓ ସ୍ତ୍ରୀ ମଧ୍ୟରେ ସାମାନ୍ୟ ପାର୍ଥକ୍ୟ ଥାଏ । କିନ୍ତୁ କିଛି ସମୟ ବା ଦିନ ପରେ ସ୍ତ୍ରୀ ବୁଢ଼ିଆଣୀ ଖୁବ୍ ଜୋର୍‌ରେ ବଢ଼ିଯାଏ । ଏହି ବୁଢ଼ିଆଣୀ ପୁଣି ଗ୍ରୀଷ୍ମଋତୁ ଆସିଲେ ପ୍ରାପ୍ତବୟସ୍କ ହୋଇଥାଆନ୍ତି । ବଡ଼ ହୋଇଗଲେ ତାଙ୍କର ବଡ଼ ଜାଲ ତିଆରି କରିଥାଆନ୍ତି । ଏହି ସମୟରେ ଜାଲର ଆକାର ହୋଇଥାଏ ଦୁଇଫୁଟ । ବଡ଼ ଜାଲ ହେତୁ ହଠାତ୍ ଜଣାପଡ଼େ ବା ଲୋକମାନେ ବିଶ୍ୱାସ କରନ୍ତି ଯେ ବୃତ୍ତାକାର ଜାଲ ବୁଢ଼ିଆଣୀମାନେ ଗ୍ରୀଷ୍ମଋତୁରେ ହିଁ ଦେଖାଯାଆନ୍ତି ବୋଲି । ବୁଢ଼ିଆଣୀଗୁଡ଼ିକ ବାସ୍ତବରେ ତାଙ୍କ ନିଜ ଛୋଟ ଜାଲ ତିଆରି କରିଥିବା ସ୍ଥାନରେ ସବୁବେଳେ ରହିଥାଆନ୍ତି; ମାତ୍ର ତାଙ୍କର ଆକାର ଓ ଜାଲର ଆକାର ହଠାତ୍ ବଢ଼ିଯାଇଥାଏ । ଆକାର ବଢ଼ିବା ସହ ସେମାନେ ଜାଲର ଆକାର ମଧ୍ୟ ବଢ଼ାଇ ଦେଇଥାଆନ୍ତି । କାକରରେ ଅନେକ ବୁଢ଼ିଆଣୀ ମରିଯାଆନ୍ତି । ଏପରିକି ନଭେମ୍ବର ମାସ ଶେଷ ସୁଦ୍ଧା ବଡ଼ ବଡ଼ ବୁଢ଼ିଆଣୀମାନେ ମରିବାର ଦେଖାଯାଏ । ମାତ୍ର ଅଳ୍ପ କେତେକ ଶୀତ ସମ୍ଭାଳି ରହିବା ସହ ବେଳେବେଳେ ରାଜମୁକୁଟ ବୁଢ଼ିଆଣୀ (Diadem) ଭଳରେ ଘରେ ରହିବାର ଜଣାଯାଏ ।

## ବୃତ୍ତାକାର ଜାଲ ବୁଢ଼ିଆଣୀର ଶତ୍ରୁ

ଏତେ କଷ୍ଟ ପାଗ ଏମାନଙ୍କପାଇଁ ଅନୁକୂଳ ପରିସ୍ଥିତି ହୋଇ ନ ଥାଏ । ଉଷ୍ମମଣ୍ଡଳୀୟ ପାଗ ଏମାନଙ୍କର ପ୍ରଧାନ ଶତ୍ରୁ ଅର୍ଥାତ୍ ଅନାବୃଷ୍ଟି ଓ ଅତ୍ୟଧିକ ବୃଷ୍ଟି ହିଁ ଏମାନଙ୍କର କାଳ । ବୃତ୍ତାକାର ଜାଲ ବୁଢ଼ିଆଣୀମାନଙ୍କର ଶତ୍ରୁ ବହୁତ କମ୍ । ଏମାନେ ସହଜରେ ଅନ୍ୟର ଶିକାର ହୋଇ ନ ଥାଆନ୍ତି । କାରଣ ଏମାନେ ଗଛର ଉପରିଭାଗରେ ପ୍ରାୟ ଜାଲ ବାନ୍ଧି ରହିଥାଆନ୍ତି । ତେବେ ଯେଉଁ ପ୍ରାଣୀମାନେ ଏମାନଙ୍କୁ ଶିକାର କରିଥାଆନ୍ତି ସେମାନେ ହେଲେ ପରଜୀବୀୟ ବିରୁଡ଼ି (Parasitic W    ଓ ପିମ୍ପୁଡ଼ି । ଆଉ ଏକପ୍ରକାର ଶତ୍ରୁତା ହେଉ  ପରସ୍ପରକୁ ଖାଇଯିବା (Cannibalism) ଅର୍ଥାତ୍ ମିଳନ ପରେ ସ୍ତ୍ରୀ ପୁରୁଷକୁ ମାରି ଖାଇବା । ତେବେ ଅନେକଙ୍କ ମତରେ ମିଳନ ପରେ ସ୍ତ୍ରୀ ବୁଢ଼ିଆଣୀ ପୁରୁଷକୁ ମାରିଦିଏ । ଏହା ଏତେଦିନ ପର୍ଯ୍ୟନ୍ତ ବିଶ୍ୱାସ କରାଗଲା ଯେ ତାହା ଆଜି ଏକ ବିଧିବଦ୍ଧ ନିୟମ ଭାବରେ ରହିଆସିଛି ବା ବିଶ୍ୱାସଯୋଗ୍ୟ ହୋଇଛି । କିନ୍ତୁ ବ୍ରିଷ୍ଟୋ (W. S. Bristowe) ନାମକ ଜଣେ ବ୍ରିଟିଶ୍ ମାଙ୍କଡ଼ସାବିତ୍ ବୁଢ଼ିଆଣୀ ପୃଥିବୀ (The World of Spiders) ନାମକ ପୁସ୍ତକରେ ଲେଖିଛନ୍ତି ଯେ ଉପବାସ, ପ୍ରତିକୂଳ ପାଗ ଓ ଅନେକ ଶତ୍ରୁ ଆଦି ପରିସ୍ଥିତିର ସମ୍ମୁଖୀନ ହୋଇ ପୁରୁଷ ବୁଢ଼ିଆଣୀ ବଞ୍ଚିବା ସତରେ ବଡ଼ ଆଶ୍ଚର୍ଯ୍ୟ କଥା । ଆଉ ବଞ୍ଚି ତା'ର ଘର (Web) ଛାଡ଼ି ସେ ମିଳନପାଇଁ ସ୍ତ୍ରୀ ବୁଢ଼ିଆଣୀକୁ ଖୋଜି ଖୋଜି ଅନେକ ସମୟ ଓ ଶକ୍ତି ନଷ୍ଟ କରେ । ତା'ର ଅବଶିଷ୍ଟ ବଞ୍ଚିବା ସମୟ କାଳ ସେଥିପାଇଁ ଅଳ୍ପ ହୋଇଥାଏ । ଅର୍ଥାତ୍ ପୁରୁଷ ବୁଢ଼ିଆଣୀ ମୃତ୍ୟୁର କାରଣ କ୍ଲାନ୍ତ ଓ ସ୍ୱଳ୍ପ ପୁଷ୍ଟି ଯୋଗୁଁ; ମାତ୍ର ଆଦୌ ସ୍ତ୍ରୀ ଦ୍ୱାରା ଭକ୍ଷଣ ନୁହେଁ । ଏହା ଏକ ଭୁଲ ଧାରଣା । ଅବଶ୍ୟ ଏପରି ଘଟଣା କ୍ୱଚିତ୍ ଘଟେ ।

ବଞ୍ଚିବାପାଇଁ ପ୍ରାଣୀମାନେ ସଂଗ୍ରାମ କରି ଆସିଛନ୍ତି ଓ କରିବାପାଇଁ ବାଧ୍ୟ । ଏ ସଂଗ୍ରାମର ପ୍ରକାର ଓ ମାତ୍ରା ଭିନ୍ନ ଭିନ୍ନ ପ୍ରାଣୀଙ୍କର ଅଲଗା ଅଲଗା । ଲକ୍ଷ୍ୟ କିନ୍ତୁ ଗୋଟିଏ – ଖାଦ୍ୟ । ସେହି ଲକ୍ଷ୍ୟ ନେଇ ବୁଢ଼ିଆଣୀ ସବୁ ଗୋଟିଏ ଶ୍ରେଣୀ (Class-Arachnida)ର ହେଲେ ମଧ୍ୟ ତା'ର ପରିବାର ଅନେକ ହେତୁ ପରିବାର ଅନୁଯାୟୀ ଜାଲର ଭିନ୍ନତା ପରିଲକ୍ଷିତ ହୁଏ । ଆଉ ବୃତ୍ତାକାର ଜାଲ ବୁଢ଼ିଆଣୀର ଜ୍ୟାମିତିକ ଜାଲ ଓ ଏପରିକି ତା'ର ଛୁଆମାନଙ୍କର ଅତୁଆ ଅଜ୍ୟାମିତିକ ଜାଲ ପ୍ରସ୍ତୁତି ବଡ଼ ବିସ୍ମୟକର । ହେଲେବି ଏ ଜାଲ ଘର ଓ ଶିକାରର ଗୋଟିଏ ନିରାପଦ ସ୍ଥାନ । ବୁଢ଼ିଆଣୀର ଏ ଜାଲ ତା'ପାଇଁ ଆଶ୍ରୟସ୍ଥଳ ବେଳେ ଅନ୍ୟ କୀଟପତଙ୍ଗର ତାହା ବନ୍ଦୀଶାଳା । ଏହି ତ' ଆମ ପ୍ରକୃତି ଓ ପ୍ରାକୃତିକ ଜୀବ !



ଆଫ୍ରିକୀୟ ବୃତ୍ତଜାଲ ବୁଢ଼ିଆଣୀ ଏକ ପ୍ରଜାପତିକୁ ଜାଲରେ ଛନ୍ଦି ଅକର୍ମଣ୍ୟ କରିବାରେ ବ୍ୟସ୍ତ



ଦସ୍ତଖତ ବୁଢ଼ିଆଣୀ ଜାଲରେ ଦସ୍ତଖତ ପରି ଏପାଖ ସେପାଖ ରେଶମ ଜାଲ



ବୃତ୍ତାକାର ଜାଲ ବୁଢ଼ିଆଣୀ ଜାଲରେ ଅଜଣା ଭାବରେ ପତଙ୍ଗଗୁଡ଼ିକର ଛନ୍ଦଣି

# ପାଲଜାଲ ବୁଢ଼ିଆଣୀ

ପିଲାବେଳର 'ସିଂହ ଓ ମୂଷା' ଗପ କଥା ମନେପଡ଼ିଲେ ବଡ଼ ଆଶ୍ଚର୍ଯ୍ୟ ଲାଗେ ଯେ ସିଂହ ଏତେ ବଡ଼ ଜୀବଟିଏ ହେଲେ ମଧ୍ୟ ଜାଲରୁ ଖସିବାପାଇଁ ମୂଷା ପରି ସାମାନ୍ୟ ଛୋଟ ପ୍ରାଣୀଟି ଉପରେ ନିର୍ଭର କରିବାକୁ ପଡ଼ିଥିଲା । ଗପଟି ଆମକୁ ଏହାହିଁ ସୂଚାଏ ଯେ ଜୀବଜଗତ୍‌ର ଯେତେ କ୍ଷୁଦ୍ର ପ୍ରାଣୀ ହେଲେ ମଧ୍ୟ ତାକୁ ନିର୍ଭର କରିବାକୁ ପଡ଼ିଥାଏ ଅନ୍ୟ ପ୍ରାଣୀ ଉପରେ ବା କ୍ଷୁଦ୍ର ପ୍ରାଣୀର ଭୂମିକା ଜୀବଜଗତ୍ ପାଇଁ କେଉଁ ଗୁଣରେ ଊଣା ନୁହେଁ । ବୀଜାଣୁ (Bacteria) ପରି କ୍ଷୁଦ୍ରାତିକ୍ଷୁଦ୍ର ପ୍ରାଣୀ ବା ଅଣୁଜୀବ (Microorganism) କେତେକ ଅନିଷ୍ଟକାରୀ ହେଲେ ମଧ୍ୟ ଆଉ କେତେକ ପ୍ରତ୍ୟେକ ଦିନ ଆମ କାର୍ଯ୍ୟରେ ଲାଗିଛନ୍ତି । ଖାଦ୍ୟଠାରୁ ଆରମ୍ଭ କରି ନର୍ଦ୍ଦମା ଆପେ ଆପେ ସଫା ହେବା ପର୍ଯ୍ୟନ୍ତ ଅନେକ କାର୍ଯ୍ୟ ସୁରୁଖୁରୁରେ ହେବା ନିର୍ଭର କରିଥାଏ ଏହି ଅଣୁଜୀବମାନଙ୍କ ଉପରେ । ବେଶି ଆହୁରି ଆଶ୍ଚର୍ଯ୍ୟ ଲାଗିବ ଯେ କ୍ଷୀରରୁ ଦହି ହେବା, ଝୋଟ ଗଛରୁ ଝୋଟ ବାହାରିବା, ପଖାଳ ଭାତ ତିଆରି ହେବା, ପିଠା ନରମ ହେବା, ସୁରାସାର (Alcohol) ତିଆରି ହେବା, ଜୈବ କୌଶଳ (Biotechnology) ପଦ୍ଧତି ମାଧ୍ୟମରେ ନୂଆ ନୂଆ ଔଷଧ ବା ଭିଟାମିନ୍ ପ୍ରସ୍ତୁତ କରିବା ଆଦି ହିଁ ଏହି ଅଣୁଜୀବର କୃତିତ୍ୱ । ଏମିତି ତ' ଅନେକ କ୍ଷୁଦ୍ର ପ୍ରାଣୀ ଆମ ଚାରିପଟେ ଅଛନ୍ତି । ଆଉ ଏ କ୍ଷୁଦ୍ର ପ୍ରାଣୀ ଭିତରେ ଆମ ବାଡ଼ି, ବଗିଚା, ଘର ଓ ଏଣେତେଣେ ରହିଥିବା ଅବ୍ୟବହୃତ ସ୍ଥାନର ଗୋଟିଏ ସାଧାରଣ ପ୍ରାଣୀ ହେଉଛି ବୁଢ଼ିଆଣୀ । ଅବଶ୍ୟ କେତେ ପ୍ରକାର ବୁଢ଼ିଆଣୀ ଅଛନ୍ତି ତାହା କହିବା ବି କଷ୍ଟ । ତଥାପି ମୁଖ୍ୟ କେତେକଙ୍କ ବିଷୟରେ ପଢ଼ିବାକୁ ବା ଶୁଣିବାକୁ ସତରେ ବଡ଼ ମଜା ଲାଗିବ । ବିଶେଷକରି ସେମାନଙ୍କର ଗତି, ରୀତି, ନୀତି, ବ୍ୟବହାର ଓ ଶିକାର ପ୍ରଣାଳୀ ସହ ଜାଲ ତିଆରି କରାମତି ।

### ପାଲଜାଲ ବୁଢ଼ିଆଣୀର ବିସ୍ତୃତି ଓ ଶରୀର ଗଠନ

ନାମଟି ଶୁଣିଲେ କେମିତି ଲାଗୁଥିବ ସତରେ ! ପାଲଜାଲ ବୁଢ଼ିଆଣୀର ନାମ ଅନେକ ପ୍ରକାର । କିନ୍ତୁ ଅଧିକାଂଶ ଲୋକ ଏହାକୁ 'ବଡ଼ ଗୋଲ ପଥର ଜାଲ ବୁଢ଼ିଆଣୀ' ବୋଲି ନାମକରଣ କରିଥାଆନ୍ତି । ବୁଢ଼ିଆଣୀକୁ ପୁରୁଣା ଇଂରାଜୀ ଭାଷାରେ କୁହାଯାଏ କୋପା (Coppa) । ଆଉ ମଧ୍ୟ ଯେକୌଣସି ବୁଢ଼ିଆଣୀର ଜାଲକୁ କୁହାଯାଏ 'ବଡ଼ ଗୋଲାକାର ପଥର ଜାଲ' (Cobweb) । ଆଉ କେତେକ ମଧ୍ୟ ଏହାକୁ ନାମିତ କରିଥାଆନ୍ତି 'ସୁଡ଼ଙ୍ଗ ଜାଲ ବୁଢ଼ିଆଣୀ' (Tunnel-web Spider) ଭାବରେ । କାରଣ ଜାଲର ଗୋଟିଏ କଡ଼ରେ ଅଧିକାଂଶ ପାଲଜାଲ ବୁଢ଼ିଆଣୀ ତିଆରି କରିଥାଆନ୍ତି ସୁଡ଼ଙ୍ଗ ପରି ଗୋଟିଏ ବାଟ । ଘର ଭିତର କେତେକ ବୁଢ଼ିଆଣୀ ମଧ୍ୟ ପାଲଜାଲ ବୁଢ଼ିଆଣୀର ଅନ୍ତର୍ଭୁକ୍ତ; କିନ୍ତୁ ସମସ୍ତ ପାଲଜାଲ ଘରେ ତିଆରି ହୋଇ ନ ଥାଏ । ଅଧିକାଂଶ ଜାଲ ତିଆରି ହୋଇଥାଏ ପତ୍ର ଗଦା ବା ତୃଣଗଦା (Herbage) ମଧ୍ୟରେ ।

ଏ ପାଲଜାଲ ବୁଢ଼ିଆଣୀମାନେ ପୃଥିବୀର ପ୍ରତ୍ୟେକ ସ୍ଥାନରେ ଦେଖାଯିବାର ଜଣାଯାଏ । ସବୁଠାରୁ ଜଣାଶୁଣା ସାଧାରଣ ପାଲଜାଲ ବୁଢ଼ିଆଣୀ ନାମ ହେଉଛି ଟେଜେନାରିଆ *(Tegenaria domestica)* । ଏ ପ୍ରକାର ବୁଢ଼ିଆଣୀ ବେଶି ପରିମାଣରେ ଆଖିକୁ ଆସେ ୟୁରୋପରେ । ଅନ୍ୟ ବୁଢ଼ିଆଣୀମାନଙ୍କର ନିର୍ଦ୍ଦିଷ୍ଟ ଗୋଟିଏ ପରିବାର ଥିଲାବେଳେ ପାଲଜାଲ ବୁଢ଼ିଆଣୀର ପରିବାର ଅନେକ । ତେବେ ଟେଜେନାରିଆ ଗୋଟିଏ ନିର୍ଦ୍ଦିଷ୍ଟ ପରିବାର (Agelenidae)ର ।

ଏ ପ୍ରକାର ବୁଢ଼ିଆଣୀର ଆକାର ପ୍ରାୟ ଦୁଇ ମିଲିମିଟରରୁ ଆରମ୍ଭ କରି ଚାରିଇଞ୍ଚ ପର୍ଯ୍ୟନ୍ତ



ଭୂଇଁ ଉପରେ ଶୁଖିଲା ପତ୍ର କାଠି ଆଦି ପଡ଼ିଥିବା ସ୍ଥାନରେ ସୁଡ଼ଙ୍ଗ ପରି ଆକାର ତିଆରି କରିଥିବା ପାଲଜାଲ ବୁଢ଼ିଆଣୀ

ହୋଇଥାଏ । ଅବଶ୍ୟ ଗୋଡ଼ଗୁଡ଼ିକର ଲମ୍ବ ସହ ଏହାର ଆକାର ଏଭଳି ହୋଇଥାଏ । ତେଣୁ ଆକାରରେ ଏଗୁଡ଼ିକ କେତେ ଛୋଟ ସ୍ପଷ୍ଟ ଅନୁମେୟ । ଶରୀରଟି ଗୋଲାକାର ଓ ଦେହସାରା ଆଂଶୁରେ ପୂର୍ଣ୍ଣ । ୟୁରୋପରେ ଦେଖାଯାଉଥିବା ଟେଜେନାରିଆଗୁଡ଼ିକ ଅପେକ୍ଷାକୃତ ବଡ଼ । ବର୍ଣ୍ଣ କଳା । ତେବେ ଟେଜେନାରିଆର ସବୁଠାରୁ ବଡ଼ *(Tegenaria parictina)* ଟି ହିଁ ବେଶ୍ ପ୍ରଧାନ ଭାବରେ (Cardinal Spider) ଜଣାଶୁଣା ଏ ପ୍ରକାର ମୁଖ୍ୟ ବୁଢ଼ିଆଣୀଟି ସଂପର୍କରେ ଏକ କାହାଣୀ ଶୁଣିବାକୁ ମିଳେ । ତାହା ହେଉଛି ଯେ ହାମ୍ପଟନ୍ କୋର୍ଟ ପ୍ରାସାଦ (Hampton Court Palace) ରେ ବାସ କରୁଥିବା କାର୍ଡ଼ିନାଲ ଓଲ୍‌ସେ (Cardinal Wolsey) ଏ ପ୍ରକାର ବୁଢ଼ିଆଣୀକୁ ଦେଖି ଖୁବ୍ ଜୋର୍‌ରେ ଭୟଭୀତ ହୋଇଯାଇଥିଲେ ବୋଲି ତା'ର ନାମକରଣ ଏପରି 'ମୁଖ୍ୟ ବୁଢ଼ିଆଣୀ' ବା 'କାର୍ଡ଼ିନାଲ ବୁଢ଼ିଆଣୀ' ଭାବରେ ନାମିତ କରାଯାଇଛି ।

## ପାଲଜାଲ ବୁଢ଼ିଆଣୀର ଜାଲ

ବିଶ୍ୱାସ କରାଯାଏ ଯେ ପାଲଜାଲ ବୁଢ଼ିଆଣୀର ପ୍ରକୃତ ବାସସ୍ଥଳୀ ଗୁମ୍ଫା ବା ସେହିପରି କିଛି ଆବଦ୍ଧ ନିରାପଦ ସ୍ଥାନ । ତେବେ ଏମାନେ ଘର, କୋଠା ଏବଂ ଗୁମ୍ଫା, ଗଛ କୋରଡ଼ ବା ବଡ଼ ବଡ଼ ପଥରଗୁଡ଼ିକର ଫାଙ୍କ ସ୍ଥାନଗୁଡ଼ିକରେ ଦେଖାଯାଆନ୍ତି । ୟୁରୋପରେ ଦେଖାଯାଉଥିବା ସାଧାରଣ ଘରୋଇ ପାଲଜାଲ ବୁଢ଼ିଆଣୀ *(Tegenaria domestica)* ଯେଉଁ ଜାଲ ତିଆରି କରେ ତାହା ବେଶ୍ ମୋଟା ଓ ଜାଲଗୁଡ଼ିକ ଶ୍ୱେତବର୍ଣ୍ଣର । ବୃତ୍ତ ଜାଲ (Orb-web) ଓ ପାଲଜାଲ ଭିତରେ ପ୍ରଭେଦ ଥାଏ । ପାଲଜାଲଗୁଡ଼ିକ ଅଠାଳିଆ ନୁହଁନ୍ତି । ଏହାର ଉପରିଭାଗରେ ଡଗ ଡଗ ହୋଇ ଜୋର୍‌ରେ ଚାଲିବାପାଇଁ ଏକ ଫାନ୍ଦ (Trip-wire Snare) ବୁଣା ଯାଇଥାଏ । ଆଉ କେତେକ ଏ ଜାତିର ବୁଢ଼ିଆଣୀମାନଙ୍କ ପ୍ରକୃତ ଜାଲର ଯଥେଷ୍ଟ ଉପରି-ଭାଗରେ ଅନ୍ୟକେତେକ ଜାଲ ( ଲମ୍ବ ସିଧା ) ଟଣା

ହୋଇ ବୁଣାଯାଇଥାଏ । ପାଲଜାଲ ବୁଢ଼ିଆଣୀର ଏ ପ୍ରକାର ଜାଲ ତିଆରି ଏକ ବୈଶିଷ୍ଟ୍ୟ । ପାଲ ଜାଲ ବୁଢ଼ିଆଣୀ ତା'ର ପ୍ରକୃତ ଜାଲ ଉପରେ ଖୁବ୍ ଜୋର୍‌ରେ ଦଉଡ଼ି ଯିବାଆସିବା କରିପାରେ ଫାନ୍ଦ ଟଣା ଜାଲ ଥାଇ ମଧ୍ୟ । ଜୋର ଗତି ଯୋଗୁଁ କେତେକ ଡରକୁଳା ଲୋକ ଏ ପ୍ରକାର ବୁଢ଼ିଆଣୀକୁ ଦେଖି ଡରିଥାଆନ୍ତି, ଏମାନଙ୍କୁ ଘୃଣା କରିଥାଆନ୍ତି ଓ ଏମାନଙ୍କ ବିଷୟରେ ଅନେକ ଏଣୁତେଣୁ କଥା ମଧ୍ୟ କହିଥାଆନ୍ତି । ଏପରି ବ୍ୟକ୍ତିମାନଙ୍କୁ ମନରେ ସାନ୍ତ୍ୱନା ଦେବାପାଇଁ ଆଉ କେତେକ କୁହନ୍ତି ଯେ ଏପରି ବୁଢ଼ିଆଣୀମାନେ ଖୁବ୍ ଜୋରରେ ଜାଲ ଉପରେ ଯିବାଆସିବା କରିବାଦ୍ୱାରା ହାଲିଆ ହୋଇଯିବାର ଦେଖାଯାଏ । ତେଣୁ ସେମାନେ ମଣିଷର କ୍ଷତି କରିବା ସମ୍ଭବ ହୋଇପାରେ ନାହିଁ । ତେବେ ଏସବୁ କଥାର ଅର୍ଥ କିଛି ନାହିଁ । ଏଗୁଡ଼ିକ ସାଧାରଣତଃ ଲୋକକଥା ।

## ପାଲଜାଲ ବୁଢ଼ିଆଣୀର ଶିକାର

ଏ ପ୍ରକାର ବୁଢ଼ିଆଣୀର ଜାଲ ବା ଘରର ବିଶେଷତ୍ୱ ହେଉଛି ଯେ ଜାଲ ତିଆରି ଉପାୟ, ଜାଲ ତିଆରିର ସ୍ଥାନ ଓ ଜାଲର ବ୍ୟବହାର ପ୍ରକୃତି । ଅନେକ ପ୍ରକାରର ପାଲଜାଲ ବୁଢ଼ିଆଣୀ ଦେଖାଯାଉଥିବାରୁ ତାଙ୍କର ବ୍ୟବହାରକୁ ନେଇ ସେମାନଙ୍କୁ ଦୁଇଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ ପ୍ରକାରଟି ହେଉଛି ଯେ ଜାଲ ତିଆରି କରି ଜାଲପାଖକୁ ଲାଗି ଏକ ସୁଡ଼ଙ୍ଗ ତଆରି କରି ରହିବା ସହ ଶିକାରକୁ ଧରିବା ବେଳେ ଉପରର ଲମ୍ବ ଜାଲ (Horizontal Web) ଟିକୁ ବ୍ୟବହାର କରିବା । ଦ୍ୱିତୀୟ ପ୍ରକାରଟିରେ ବୁଢ଼ିଆଣୀ ତା'ର ଜାଲତଳେ ମୁଣ୍ଡକୁ ତଳ (Upside Down) କରି ଚାଲିବା ଅଭ୍ୟାସ । ଯାହାହେଉ ଅନ୍ୟ ବୁଢ଼ିଆଣୀମାନଙ୍କ ପରି ଏ ବୁଢ଼ିଆଣୀ ତା'ର ଜାଲରେ ଶିକାର ଧରି ଖାଇଥାଏ । ଫାନ୍ଦ ଜାଲ ବାନ୍ଧି ତା'ର ଜାଲ ହଲିବାମାତ୍ରେ ବୁଢ଼ିଆଣୀ ଶିକାରର ଆଭାସ ପାଇଯାଏ । ତତ୍‌କ୍ଷଣାତ୍ ବୁଢ଼ିଆଣୀ ଆସି ତା'ର ଶିକାର କାର୍ଯ୍ୟରେ ଲାଗିପଡ଼େ । ତେଣୁ ସେ ବିଷଦାନ୍ତରୁ ବିଷ ପ୍ରୟୋଗ କରି କୀଟପତଙ୍ଗକୁ ଅବଶ କରିଦିଏ । ଶିକାରଟି ଅଚଳ ହୋଇଯିବା ପରେ ଧୀରେ ଧୀରେ ତା'ର ଜାଲ କଡ଼ରେ ଥିବା ସୁଡ଼ଙ୍ଗଆଡ଼କୁ ଟାଣି ଦେଇଥାଏ । ବେଳେବେଳେ ଶିକାରଟି ଖସିଯିବାକୁ ଚେଷ୍ଟାକଲେ ବୁଢ଼ିଆଣୀଟି ତା'ର ଜାଲପାଖ ଗାତ ଆଡ଼କୁ ଚାଲିଆସି ତା' ଜାଲଦ୍ୱାରା ଖସିବା ବାଟ ବନ୍ଦ କରିଦିଏ । ଫଳରେ ଶିକାରଟି ଆଉ ଜାଲ ମଧ୍ୟରୁ ଖସି ଯାଇପାରେ ନାହିଁ । ତା' ପରେ ଶିକାରକୁ ମାରି ଠିକ୍ ଅନ୍ୟ ବୁଢ଼ିଆଣୀଙ୍କ ପରି ତା' ଶରୀରର ରସକୁ ଶୋଷି ଖାଇଯାଏ ।

## ପାଲଜାଲ ବୁଢ଼ିଆଣୀର ପ୍ରଜନନ

ପ୍ରଜନନ (Breeding) ସମୟ ଆସିଲେ ପୁରୁଷ ବୁଢ଼ିଆଣୀ ଏକ ଛୋଟିଆ ଜାଲ ବୁଣି ସେଥିରେ ସେ ଶୁକ୍ରରସ ଜମା କରେ । ଏ ରସକୁ ତା'ପରେ ସେ ସ୍ପର୍ଶପାଦ (Pedipalp) ରେ ନେଇ ଏକ ସ୍ତ୍ରୀ ଅନ୍ୱେଷଣରେ ଲାଗିପଡ଼େ । ସ୍ତ୍ରୀ ଜାଲପାଖକୁ ଆସି ଶିକାର ଜୀବଟି ଜାଲରୁ ଖସିବାପାଇଁ ଚେଷ୍ଟା କରିବା ପରି ଜାଲଟିକୁ ଟଣାଓଟରା କରେ । ଅବଶ୍ୟ ଏପରି ଟଣାଓଟରା ସେ ଫାନ୍ଦ ଜାଲ (Trip-wire)ଟିକୁ କରିଥାଏ । ଏପରି କରି ପୁରୁଷଟି ତା'ର ଗୋଡ଼ଗୁଡ଼ିକ ଦେହତଳକୁ ନେଇ ଜାକିଦିଏ । କିଛି ସମୟ ଚୁପ୍‌ଚାପ୍ ରହି ପୁଣି ସ୍ତ୍ରୀ ବୁଢ଼ିଆଣୀ ଜାଲକୁ ଟଣାଓଟରା କରେ । ସ୍ତ୍ରୀ ବୁଢ଼ିଆଣୀ ଏ ପରିସ୍ଥିତିକୁ ଗ୍ରହଣ କଲେ ସେ ବି ପୁରୁଷ ପରି ଗୋଡ଼ଗୁଡ଼ିକୁ ଜାକି ଦିଏ । ଏପରି ସଙ୍କେତ ପାଇବାକ୍ଷଣି ପୁରୁଷଟି ଜାଲ ମଧ୍ୟ ଦେଇ ସୁଡ଼ଙ୍ଗ ପାଖକୁ ଚାଲିଆସେ ଓ ସ୍ପର୍ଶପାଦକୁ ସ୍ତ୍ରୀ ଶରୀର ମଧ୍ୟରେ ପ୍ରବେଶ କରାଏ । ପ୍ରଥମେ ଗୋଟିଏ ସ୍ପର୍ଶପାଦକୁ ଓ ପରେ ଅନ୍ୟଟିକୁ ସ୍ତ୍ରୀ ଶରୀରର ଜନନେନ୍ଦ୍ରିୟ (Genital Opening) ମଧ୍ୟକୁ ନେଇ ଶୁକ୍ର (Sperm)ଗୁଡ଼ିକୁ ଛାଡ଼ିଦିଏ । ସ୍ତ୍ରୀ ଶରୀରରେ ଅଣ୍ଡାଗୁଡ଼ିକର ସମାୟନ (Fertilisation) ପରେ ପରେ ସ୍ତ୍ରୀ ଅଣ୍ଡାଗୁଡ଼ିକ ଦେବା ଆରମ୍ଭ କରେ ।

ଆଉ ଏ ଅଣ୍ଡାଗୁଡ଼ିକ ସୁରକ୍ଷିତ ଅବସ୍ଥାରେ ରହିଥାଏ ଏକ ରେଶମୀ କୋଷା (Silken Cocoon) ମଧ୍ୟରେ । ଏ କୋଷା ଆଉ କିଛି ରେଶମୀ ସୂତାରେ ଝୁଲି ରହିବାର ଦେଖାଯାଏ । ଅର୍ଥାତ୍ ଅଣ୍ଡା ରହିଥିବା ରେଶମୀ କୋଷା ହିଁ ସ୍ତ୍ରୀ ବୁଢ଼ିଆଣୀର ଜାଲ ପାଖରେ ରହିଥାଏ । କୋଷାର ବର୍ଣ୍ଣ ମଇଳା ଧଳା । କିଛିଦିନ କୋଷା ମଧ୍ୟରେ ଅଣ୍ଡାଗୁଡ଼ିକ ରହି ଫୁଟିଥାଆନ୍ତି । ତା'ପରେ ଛୁଆଗୁଡ଼ିକ ବାହାରି ମାଆପରି ଆସ୍ତେ ବଡ଼ ହୋଇ ଜାଲ ତିଆରି କରନ୍ତି ଓ ଶିକାର କରିବାରେ ଲାଗିପଡ଼ନ୍ତି ।

### ଔଷଧ ଭାବରେ ପାଲଜାଲ

ଆଜିକାଲି ଘରେ ବୁଢ଼ିଆଣୀ ଜାଲ ବା ବସା ଦେଖିଲେ ଲୋକେ ବଡ଼ ଘୃଣା କରୁଛନ୍ତି । କାରଣ ଘରର ଅନ୍ତତଃ ଚାରିକଡ଼ ବୁଢ଼ିଆଣୀ ଜାଲରେ ଭର୍ତ୍ତିହୋଇ ଘର ଅସୁନ୍ଦର ଓ ଅପରିଷ୍କାର କରିଥାନ୍ତି ଏମାନେ । ତେଣୁ ଆମ ଘର ଭିତରର ଏ ବୁଢ଼ିଆଣୀ ଗୋଟିଏ ଘୃଣ୍ୟ ପ୍ରାଣୀ । ତେବେ ଇଂଲଣ୍ଡର ଗାଁଗହଳିରେ ଊନବିଂଶ ଶତାବ୍ଦୀର ପ୍ରଥମଭାଗରେ ପାଲଜାଲ ବୁଢ଼ିଆଣୀର ଜାଲଗୁଡ଼ିକ ହିଁ ଘର ମଧ୍ୟରେ ପ୍ରାଥମିକ ଚିକିତ୍ସା (First Aid) ପାଇଁ ଏକ ମୁଖ୍ୟ ପଦାର୍ଥ ଭାବରେ ବ୍ୟବହୃତ ହେଉଥିଲା । ସେ ସମୟରେ ମଫସଲରେ ଜଣେ ଡାକ୍ତର ବହୁତ ଦୂରରେ ରହୁଥିବାବେଳେ ଘୋଡ଼ା ସାହାଯ୍ୟରେ ତାଙ୍କୁ ଖବର ଦେଇ ଡକାଇବା ସମ୍ଭବ ହେଉଥିଲା । ତେବେ ସାଧାରଣ ଘାଆ ବା ଶରୀରର କୌଣସି ଅଂଶରେ ଖଣ୍ଡିଆଖାବରା ହୋଇଗଲେ ସବୁଠାରୁ ବଡ଼ ଓ ମୋଟା ପାଲଜାଲ ଦ୍ୱାରା ଘୋଡ଼ାଇ ବା ଗୁଡ଼ାଇ ରକ୍ତ ବନ୍ଦ କରାଯାଉଥିଲା । ତେଣୁ ରକ୍ତସ୍ରାବର ପ୍ରାଥମିକ ଚିକିତ୍ସା ସମ୍ଭବ ହୋଇପାରିଥିଲା ଏ ବୁଢ଼ିଆଣୀର ଜାଲ ଦ୍ୱାରା । ଆଜିକାଲି ଅବଶ୍ୟ ଏ ପ୍ରକାର ବ୍ୟବହାରର ପ୍ରଶ୍ନ ଉଠି ନ ପାରେ । ହେଲେବି ପୁରୁଣା ସମୟରେ ଏହା ଥିଲା ଏକ ପ୍ରାକୃତିକ ଦ୍ରବ୍ୟ ।

ଛୋଟ ହେଉ ବା ବଡ଼ ହେଉ ପାଲଜାଲ ବୁଢ଼ିଆଣୀର ବିଶେଷତ୍ୱ ହେଲା ସୁଡ଼ଙ୍ଗଯୁକ୍ତ ଜାଲ । କେତେକ ବୁଢ଼ିଆଣୀ ଗଛରେ ଜାଲ ତିଆରି କଲାବେଳେ ଏମାନଙ୍କ ଅଭ୍ୟାସ ହେଉଛି ପଥରଦ୍ୱୟ ମଝିରେ ବା ଗୁମ୍ଫାପରି ଅନ୍ଧାରିଆ ସ୍ଥାନରେ ଏପରିକି ଗଛପତ୍ର ବା ଘାସଗଦା ଆଦି ମଝିରେ ବସା ବାନ୍ଧିବା । ପ୍ରାଣିଜଗତ୍‌ର ସତରେ ଏ ଆଉ ଏକ ବିସ୍ମୟ । ବିଶେଷକରି ଘରମାନଙ୍କ ମଧ୍ୟରେ ଏ ପ୍ରକାର ବୁଢ଼ିଆଣୀ ଦୃଷ୍ଟିଗୋଚର ହେଉଥିବାରୁ ବୋଧହୁଏ ପୁରୁଣା ସମୟରେ ଏମାନଙ୍କୁ ନ ମାରି ଏମାନଙ୍କ ଜାଲକୁ କିପରି ମନୁଷ୍ୟ ବ୍ୟବହାର କରିବା ଶିଖିଥିଲା ତାହା ବାସ୍ତବରେ ଆଉ ଏକ ମଜା କଥା । ଅର୍ଥାତ୍ ପ୍ରକୃତି ମଧ୍ୟରେ ଅଧିକାଂଶ ପ୍ରାକୃତିକ ପଦାର୍ଥକୁ କାମରେ ଲଗାଇବା ଥିଲା ମନୁଷ୍ୟର ଆଗ୍ରହ । ଛୋଟିଆ ପ୍ରାଣୀଟିଏ ହେଲେ ବି ମନୁଷ୍ୟ ହେୟ ମନେ ନ କରି ତା' ପ୍ରତି ଆକୃଷ୍ଟ ହୋଇଥିଲା; ତା'ର ଘର ଉପରେ ନଜର ପକାଇ ତାକୁ ବ୍ୟବହାର କରିବା ସତରେ ବଡ଼ ଖୁସିର କଥା । ଭବିଷ୍ୟତରେ ଏହା ଆଉ ବା କେଉଁ କାମରେ ନ ଲାଗିପାରିବ କାହିଁକି ?

# ଗଧିଆ ବୁଢ଼ିଆଣୀ

ଗଧିଆ ! କୁକୁର ପରି ଏକ ମାଂସାଶୀ ପ୍ରାଣୀ । ଦେଖିବାକୁ ସତରେ ଭୟଙ୍କର । ହେଲେବି ଅତି ସାହସୀ, ଅତି କଷ୍ଟସହିଷ୍ଣୁ, ବୁଦ୍ଧିମାନ୍ ଓ ଦକ୍ଷ ଶିକାରୀଭାବେ ପରିଚିତ । ପିଲା ବା ଲୋକମାନେ ଗଧିଆ ନାଁ ଶୁଣିଲେ ଛାନିଆ ହୋଇଯାଆନ୍ତି । କେତେକ ଏହାକୁ 'ହେଟା ବାଘ' (Wolf) ବୋଲି ମଧ କହିଥାଆନ୍ତି । ବାଘପରି ହିଂସ୍ର ପ୍ରକୃତି ବି ଏ ଗଧିଆ ବା ହେଟାବାଘ ପାଖରେ ଦେଖିବାକୁ ମିଳେ । ବୈଜ୍ଞାନିକମାନେ ଭାବନ୍ତି ଯେ ଗଧିଆ ହେଉଛି ଗୃହପାଳିତ କୁକୁରର ପୂର୍ବ ବଂଶଧର । ଗଧିଆ ଦୁଇପ୍ରକାର (ପାଉଁଶିଆ ଗଧିଆ ଓ ଲାଲ ଗଧିଆ) । ହେଲେ ବି ଉଭୟଙ୍କ ପ୍ରକୃତି ଓ ବ୍ୟବହାର ହିଁ ମନୁଷ୍ୟକୁ ଆକର୍ଷଣ କରିଥାଏ । ତା' ଛଡ଼ା ଶିକାରର ଆଭାସ ପାଇଲେ ଏମାନେ ମାଇଲ୍ ମାଇଲ୍ ଧରି ଖୁବ୍ ଜୋର୍‌ରେ ଦୌଡ଼ିପାରନ୍ତି ମଧ । ଶିକାର ପ୍ରକୃତି ଓ ଶିକାର କୌଶଳପାଇଁ ଗଧିଆ ପରି ସ୍ତନ୍ୟପାୟୀ ହିଂସ୍ର ପ୍ରାଣୀ ବିଷୟରେ ଉଣାଅଧିକେ ପିଲାମାନେ ଶୁଣିଥାଆନ୍ତି ଅଥବା ପ୍ରାଣିଉଦ୍ୟାନ ବା ଚିଡ଼ିଆ-ଖାନାରେ ଦେଖିବାର ସୁଯୋଗ ପାଇଥାଆନ୍ତି ।

ଏ ତ ଗଲା ଗଧିଆ କଥା । ପୁଣି ଗଧିଆ ବୁଢ଼ିଆଣୀ (Wolf Spider) ଆଉ ଏକ ବିସ୍ମୟ । ହଁ ଏକପ୍ରକାର ବୁଢ଼ିଆଣୀ ଆମ ପ୍ରକୃତିରେ ଦେଖାଯାଏ ଯାହା ଗଧିଆ ପରି ଦେଖିବାକୁ ନ ହେଲେ ମଧ ପ୍ରକୃତି ଗଧିଆ ପରି । ଅର୍ଥାତ୍ କୌଶଳ କରି ଶିକାର କରିବା ବା ବୁଦ୍ଧି ପ୍ରୟୋଗ କରି ଶିକାରୀ ମୁହଁରୁ ନିଜକୁ ବଞ୍ଚାଇବା ପ୍ରକୃତି ହିଁ ଠିକ୍ ଗଧିଆ ପରି । ଏମିତି ପ୍ରକୃତି ଯୋଗୁଁ ହିଁ ଏ ବୁଢ଼ିଆଣୀର ନାମକରଣ ଏପରି କରାଯାଇଛି । ଅନ୍ୟ ବୁଢ଼ିଆଣୀମାନଙ୍କ ଅପେକ୍ଷା ଗଧିଆ ବା ହେଟାବାଘ ବୁଢ଼ିଆଣୀର ଶିକାର ଟିକିଏ ଭିନ୍ନ ରକମର ।

**ବିସ୍ତୃତି ଓ ପ୍ରକୃତି**

ଅନ୍ୟ ବୁଢ଼ିଆଣୀମାନଙ୍କ ପରି ଗଧିଆ ବୁଢ଼ିଆଣୀ ଗୋଟିଏ ସନ୍ଧିପଦ (Arthropod) ପ୍ରାଣୀ । ଏମାନଙ୍କ ବର୍ଗ (Order-Araneida)ରେ କେତେ ପ୍ରକାର ବୁଢ଼ିଆଣୀ ଅଛନ୍ତି ତାହା ଜାଣିବା ସତରେ ବଡ଼ କଷ୍ଟ । ତେବେ ହିସାବ କରି ଦେଖାଯାଇଛି ଯେ ଉତ୍ତର ଆମେରିକାରେ ୧୨୫ ପ୍ରକାର ଓ ୟୁରୋପରେ ୫୦ ପ୍ରକାର ଗଧିଆ ବୁଢ଼ିଆଣୀ ଦେଖାଯାଆନ୍ତି । ଏମାନେ ପ୍ରାୟ ବିଶ୍ୱର ସବୁ ମହାଦେଶରେ ଦେଖାଯାଆନ୍ତି; ମାତ୍ର ଆଣ୍ଟାର୍କଟିକାରେ ଦେଖାଯାଆନ୍ତି ନାହିଁ । ତେଣୁ ଏ ବ୍ୟାପ୍ତିରୁ ଅନୁମେୟ ଯେ କେତେ ପ୍ରକାର ଗଧିଆ ବୁଢ଼ିଆଣୀ ବାସ୍ତବିକ୍ ପୃଥିବୀରେ ଥିବେ ! ଏମାନଙ୍କ ପରିବାର (Family) ମୁଖ୍ୟତଃ ଦୁଇଟି (Lycosidae ଓ Pisauridae) । ବୈଜ୍ଞାନିକ ଭାଷାରେ ସବୁଠାରୁ ସାଧାରଣ ଗଧିଆ ବୁଢ଼ିଆଣୀ ନାଁ ହେଉଛି ପିସାଉରା *(Pisaura mirabilis)* ।

ଏମାନେ ପତ୍ରଗୁଡ଼ିକ ଉପରେ ଅନେକ ସଂଖ୍ୟାରେ ଦେଖାଯାଆନ୍ତି । ରାତିରେ ଖୁବ୍ ସକ୍ରିୟ ଥାଆନ୍ତି । ହେଲେ ବି ଦିନବେଳେ ବେଳେବେଳେ ଅନେକ ସଂଖ୍ୟାରେ ଗଛତଳେ ପଡ଼ିଥିବା ଶୁଖିଲା ପତ୍ର ଉପରେ ଦେଖାଯାଆନ୍ତି । ବୋଧହୁଏ ଦିନବେଳେ କୌଣସି ଏକ ପ୍ରାଣୀ ଏପରି ଶୁଖିଲା ପତ୍ର ଉପରେ ଯାଉଥିବାରୁ ବୁଢ଼ିଆଣୀଗୁଡ଼ିକ ବାଧାପାଇ ଇତସ୍ତତଃ ହୋଇ-ଯାଆନ୍ତି । ନରମ ମାଟି ମଧରେ ଛୋଟ ଗାତ ଖୋଳି ଏମାନେ ରହିଥାଆନ୍ତି ବା ଆଶ୍ରୟ ନେଇଥାଆନ୍ତି । ଦିନବେଳା ଆଉ କେତେକ ଗାତଗୁଡ଼ିକୁ ରେଶମ ଜାଲରେ ଘୋଡ଼ାଇ ଦେଇଥାଆନ୍ତି । ଏହା ଛଡ଼ା ଏ ପରିବାରର କେତେକ ମଧ ଗାତ ମୁହଁରୁ ଆରମ୍ଭ କରି ସୁଡ଼ଙ୍ଗ ପରି ତିଆରି କରିଥିବା ନଳା ପରି ବସାଟିକୁ ଆଚ୍ଛାଦିତ କରିଥାଆନ୍ତି ରେଶମ ଜାଲରେ । ତେଣୁ ଏ



ଗଧିଆ ବୁଢ଼ିଆଣୀର ଉପରେ ଓ ତଳେ ଦୁଇଯୋଡ଼ା କରି ଆଠଟି ସାଧାରଣ ଚକ୍ଷୁ ।

ଏ ବୁଢ଼ିଆଣୀର ସମ୍ମୁଖଭାଗରେ ଆଠଟି ସାଧାରଣ ଚକ୍ଷୁ ମଧ୍ୟରୁ ଚାରିଟି ଉପରେ ଓ ଚାରିଟି ତଳେ । ଉପର ଚାରିଟି ଦୁଇଯୋଡ଼ା ଭାବରେ ରହିଥିବା ବେଳେ ତଳ ଚାରିଟି ଗୋଟିଏ ଧାଡ଼ିରେ ରହିଛି ।



ଗଧିଆ ବୁଢ଼ିଆଣୀର ଗୋଡ଼ ପାଖରେ ରହିଥିବା ଅଣ୍ଡାଗୁଡ଼ିକ ଫୁଟିବା ଉପରେ ଏବଂ ସ୍ତ୍ରୀ ଗଧିଆ ବୁଢ଼ିଆଣୀ ଅଣ୍ଡା ଫୁଟିବା ପାଇଁ ଜଗି ରହିଛି

ନଳାପରି ବସାକୁ କୁହାଯାଏ 'ରେଶମୀ ନଳୀ' (Silken Tube) । ଏ ରେଶମକୁ ଏମାନେ ଫାନ୍ଦ ଭାବରେ ବ୍ୟବହାର କରନ୍ତି ନାହିଁ । ଏ ଜାଲର ମୁଖ୍ୟ କାର୍ଯ୍ୟ ହେଉଛି ବୁଢ଼ିଆଣୀ ନିଜକୁ ଗୁପ୍ତଭାବରେ ସୁରକ୍ଷିତ କରି ରଖିବା । ତେଣୁ ଗଧିଆ ବୁଢ଼ିଆଣୀ ବିଶେଷକରି ନରମ ମାଟିରେ ଗାତକୁ ସୁଡ଼ଙ୍ଗ ଆକାର କରି ମାଟି ତଳେ ରହିବାକୁ ଭଲ ପାଏ । ଜଙ୍ଗଲ ବା ଗଛପତ୍ର ଥିବା ସ୍ଥାନ ଏମାନଙ୍କର ଅତି ପ୍ରିୟ ସ୍ଥାନ । କାରଣ ସୁଡ଼ଙ୍ଗପରି ମାଟିର ଗାତ ପତ୍ରତଳେ ଆଡୁଆଳରେ ରହିଲେ ଏମାନେ ବହୁତ ନିରାପଦ ମଣନ୍ତି । ଆଉ ରେଶମ ଗ୍ରନ୍ଥିରୁ ନିସୃତ ହେଉଥିବା ରେଶମ ଜାଲର ବ୍ୟବହାର ବି ଅନ୍ୟପ୍ରକାର ବୁଢ଼ିଆଣୀମାନଙ୍କ ଠାରୁ ସଂପୂର୍ଣ୍ଣ ଭିନ୍ନ । ଗାତ ଚାରିପଟେ ଜାଲକୁ ଗୁଡ଼ାଇବା ଦ୍ୱାରା ମାଟି ଖସି ଗାତ ମଧ୍ୟରେ ପଶି ଯାଇ ନ ଥାଏ; ଘରଟି ନିରାପଦ ଓ ସୁରକ୍ଷିତ ରହିଥାଏ ।

## ଗଧିଆ ବୁଢ଼ିଆଣୀର ଶରୀର ଗଠନ

ଏମାନେ ଦେଖିବାକୁ ସାଧାରଣ ବୁଢ଼ିଆଣୀ ପରି । ଲମ୍ୱରେ କିନ୍ତୁ ଗଧିଆ ବୁଢ଼ିଆଣୀ ଠାରେ ଭିନ୍ନତା ଦେଖାଯାଏ । କେତେକ ଅତି ସାନ ଓ କେତେକ ମଧ୍ୟମ ଧରଣର । ସବୁଠାରୁ ବଡ଼ ବୁଢ଼ିଆଣୀର ଲମ୍ୱ ଏକ ଇଞ୍ଚରୁ କମ୍ । ଅର୍ଥାତ୍ ଶରୀର

ଓ ଗୋଡ଼ ଲମ୍ବ ମିଶି ଏକ ଇଞ୍ଚରୁ କମ୍ । ଆଉ କେତେକ ମାତ୍ର ଏକ ଇଞ୍ଚ ହୋଇଥାଆନ୍ତି । ତେଣୁ ଆକାରରେ ଏମାନେ ଖୁବ୍ ସାନ । ଦେହର ବର୍ଣ୍ଣ ସଂପୂର୍ଣ୍ଣ କଳା । ଦେହସାରା ଖୁବ୍ ଛୋଟ ଛୋଟ ଆଂଶୁ (Bristle) ରେ ପୂର୍ଣ୍ଣ । ଧରି ପକାଇଲେ ଭେଲ୍‌ଭେଟ୍ ପରି ହାତକୁ ଲାଗେ । ଶରୀରଟି ଦୁଇଭାଗରେ ବିଭକ୍ତ– ଶିରୋବକ୍ଷ (Cephalo thorax) ଓ ଉଦର (Abdomen) । ଶିରୋବକ୍ଷର ଅଗ୍ରଭାଗରେ ରହିଥାଏ ମୁଣ୍ଡ, ଯେଉଁଠାରେ ଦୁଇଟି ଶକ୍ତ ମାଢ଼ି (Jaw) ଦେଖାଯାଏ । ଗଧିଆ ବୁଢ଼ିଆଣୀ ଶରୀରର ମୁଖ୍ୟ ବୈଶିଷ୍ଟ୍ୟ ହେଉଛି ମୁଣ୍ଡରେ ଥିବା ତିନିଧାଡ଼ି ଆଖି । ଏ ତିନିଧାଡ଼ି ଆଖି ମଧ୍ୟରୁ ସାମନାରେ ଚାରିଟି ଠିକ୍ ମାଢ଼ି ଉପର ପାଖକୁ ଥିବାବେଳେ ଅନ୍ୟ ଦୁଇଟି ରହିଥାଏ ଅକ୍ଷ ତଳକୁ । ସାମନାରେ ଥିବା ଆଖି ଚାରିଟି ଛୋଟ; ମାତ୍ର ତଳକୁ ଥିବା ଆଖି ଦୁଇଟି ଅପେକ୍ଷାକୃତ ବଡ଼ । ତେବେ ସମସ୍ତ ଆଖି ଅଷ୍ଟପଦୀ (Class-Arachnida) ଶ୍ରେଣୀର ଆଖି ପରି ସରଳ (Simple Eyes) । ପେଟଟି ମୁଖ୍ୟତଃ ଲମ୍ୱାଳିଆ । ଗୋଡ଼ ଆଠଟି ଅନ୍ୟ ବୁଢ଼ିଆଣୀମାନଙ୍କ ପରି ମଧ୍ୟ ଲମ୍ବ, ସରୁ ଓ ଶେଷଭାଗ ଖୁବ୍ କଳା ।

## ଗଧିଆ ବୁଢ଼ିଆଣୀର ଶିକାର

ଅନେକ ବୁଢ଼ିଆଣୀ ତାଙ୍କର ଜାଲ (Web) ଦ୍ୱାରା ଶିକାର କରିଥାଆନ୍ତି । ମାତ୍ର ଗଧିଆ ବୁଢ଼ିଆଣୀ ତା'ର ଜାଲକୁ ଆଦୌ ଶିକାର ଧରିବାରେ ଲଗାଇ ନ ଥାଏ । ରେଶମ ଗ୍ରନ୍ଥିର ଜାଲ ବାହାର କରି ନିଜ ସୁଡ଼ଙ୍ଗ ବା ଗାତକୁ ଆଚ୍ଛାଦିତ କରେ । କେତେକ ସମୁଦାୟ ନଳୀପରି ରାସ୍ତାକୁ ମଧ୍ୟ ତାଙ୍କ ଜାଲରେ ଆବୃତ କରିଥାଆନ୍ତି । ଏମାନେ ଗାତରେ ଥାଇ ଶିକାର ପାଖକୁ ଆସିଲେ ଖପ୍ କରି ଧରି ଶିକାର କରନ୍ତି । ଗାତ ମଧ୍ୟରେ ରହି ଗାତ ମୁହଁ ପାଖରେ ଏମାନେ ଟାକି ରହିଥାଆନ୍ତି କେତେବେଳେ ଗୋଟିଏ ପ୍ରାଣୀ ହାବୁଡ଼ରେ ପଡ଼ିବ ବୋଲି । ମୁଖ୍ୟ ଖାଦ୍ୟ ଏମାନଙ୍କର ହେଉଛି ଛୋଟ ଛୋଟ କୀଟ । ଏମାନେ ମୁଖ୍ୟତଃ କୀଟପତଙ୍ଗମାନଙ୍କୁ ଗୋଡ଼େଇ ଗୋଡ଼େଇ ଖପ୍ କରି ମାଢ଼ି ବସନ୍ତି । ଶିକାରକୁ ଏମାନେ ତାଙ୍କ ମାଢ଼ିଦ୍ୱାରା ପ୍ରଥମେ ଚାପି ଧରନ୍ତି । ତେଣୁ ଏମାନଙ୍କ କବଳରୁ ଶିକାର ଆଦୌ ଖସି ଯାଇପାରେ ନାହିଁ । ତା'ପରେ ମାଢ଼ି ଦ୍ୱାରା ଶିକାରକୁ ଚୋବାଇ ମଣ୍ଡ ପରି କରି ମଣ୍ଡକୁ ଶୋଷି ଖାଇଥାଆନ୍ତି । ଏମାନଙ୍କର ପାଟିଟି ଖୁବ୍ ଛୋଟ । କହିବାକୁ ଗଲେ ଠିକ୍ ଏକ କ୍ଷୁଦ୍ରକଣିକା ପରି । ତେଣୁ ଏମାନଙ୍କ ଶିକାରପାଇଁ ମାଢ଼ି ହିଁ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଶିକାରରେ ଆଖିଗୁଡ଼ିକ ମଧ୍ୟ ବଡ଼ ସହାୟକ ହୋଇଥାଏ । ଦୂରରୁ ଶିକାରକୁ ଦେଖି ଗୋଡ଼ାଇବା ବି ଏମାନଙ୍କର ଏକ ସ୍ୱଭାବ ।

## ଗଧିଆ ବୁଢ଼ିଆଣୀର ପ୍ରଜନନ

ଏମାନଙ୍କର ଦୃଷ୍ଟିଶକ୍ତି ତୀକ୍ଷ୍ଣ ହେତୁ ମିଳନ ହିଁ ଦୃଷ୍ଟି ସଂକେତ (Visual Signal) ମାଧ୍ୟମରେ ସଂଘଟିତ ହୋଇଥାଏ । ପ୍ରଜନନ ସମୟ ଆସିଲେ ପୁରୁଷ ବୁଢ଼ିଆଣୀ ଗୋଟିଏ ସ୍ତ୍ରୀ ବୁଢ଼ିଆଣୀ ଅନ୍ୱେଷଣରେ ବାହାରିଯାଏ । ସ୍ତ୍ରୀ ବୁଢ଼ିଆଣୀଟିଏ ହାବୁଡ଼ରେ ପଡ଼ିଗଲେ ପୁରୁଷଟି ତା' ସାମନାରେ ରହିଯାଏ ଓ ତା'ର ସ୍ପର୍ଶପାଦ (Pedipalp) ଦୁଇଟିକୁ ଉପର ତଳ କରି ହଲାଇବାକୁ ଲାଗିଯାଏ । ଏ ସ୍ପର୍ଶପାଦ ଦୁଇଟି ଲମ୍ବ ଓ କଳା, ଶରୀରର ମୁଣ୍ଡ ଉପରେ ଖୁବ୍ ସ୍ପଷ୍ଟ ଦେଖାଯାଏ । କେତେକ ପ୍ରକାର ଗଧିଆ ବୁଢ଼ିଆଣୀ କ୍ଷେତ୍ରରେ ସାମନାସ୍ଥ କଳା କଳା ଅଗ୍ରଭାଗ ଗୋଡ଼ ଦୁଇଟି ମଧ୍ୟ ହଲହଲ ହେଉଥାଏ । ମିଳନ ସମୟରେ ଏ ପରିବାରର ଅଧିକାଂଶ ପୁରୁଷ ବୁଢ଼ିଆଣୀର ଗୋଡ଼ ହଲିବାର ନଜରକୁ ଆସିଥାଏ । ଆଉ କେତେକ ଶରୀର ଓ ପେଟକୁ ଦୋହଲାଇବାର ମଧ୍ୟ ଜଣାଯାଏ । ସ୍ତ୍ରୀ ବୁଢ଼ିଆଣୀ ଏ ସବୁ ସଂକେତକୁ ପ୍ରଥମେ ନଜର ନ କଲେ ମଧ୍ୟ ପରେ ପରେ ଏ ଅଭିନୟଗୁଡ଼ିକୁ ବା ଗୋଡ଼ ଆଦିର ଗତିବିଧିକୁ ଅନୁରୂପ ସମର୍ଥ ଜଣାଏ । ସ୍ତ୍ରୀଟି ଅବଶ୍ୟ ସମର୍ଥନ



ଅଣ୍ଡା ରହିଥିବା କୋଷା ସହ ସ୍ତ୍ରୀ ଗଧିଆ ବୁଢ଼ିଆଣୀ (କୋଷାଟି ବୁଢ଼ିଆଣୀର ପେଟତଳେ)

କଲା ପରେ ପୁରୁଷ ପରି କାର୍ଯ୍ୟକଳାପକୁ ସାମନା ସାମନି ସେ ସେହିପରି ସଙ୍କେତ ପ୍ରଦାନ କରେ । ଏପରି କିଛିଥର ଖେଳିବା ପରେ ସେମାନେ ପରସ୍ପରକୁ ଗ୍ରହଣ କରନ୍ତି ଓ ତା'ପରେ ସେମାନଙ୍କ ମଧ୍ୟରେ ମିଳନ ଘଟେ । ମିଳନର ଠିକ୍ ପୂର୍ବରୁ ପୁରୁଷ ତା' ଶରୀରରୁ ଶୁକ୍ରରସ କାଢ଼ି ସ୍ପର୍ଶପାଦନେ ସଂଗ୍ରହ କରି ରଖିଥାଏ । ମିଳନ ସମୟରେ ଏହି ଶୁକ୍ରକୁ ସେ ସ୍ପର୍ଶପାଦରେ ନେଇ ସ୍ତ୍ରୀର ଜନନେନ୍ଦ୍ରିୟ (Genital Pore)ରେ ଜମା କରିଦିଏ ।

ଶୁକ୍ର ସ୍ତ୍ରୀ ଶରୀରରେ ଜମା ହୋଇଗଲା ପରେ ଅଣ୍ଡାଗୁଡ଼ିକର ସମାୟନ (Fertilisation) ଘଟେ । ତା' ପରେ ସ୍ତ୍ରୀ ଅଣ୍ଡାଗୁଡ଼ିକ ଗୋଟିଏ ବୃତ୍ତାକାର ବା ଯବକାଚ ଆକାରର ରେଶମୀ କୋଷା (Silken Cocoon) ମଧ୍ୟରେ ଦେବାକୁ ଆରମ୍ଭ କରେ । ଏ ଅଣ୍ଡାଥିବା କୋଷାକୁ ପେଟର ଖୁବ୍ ଶେଷଭାଗରେ ଧରି ଧରି ଏଣେତେଣେ ଯାଉଥାଏ । ଦରକାର ପଡ଼ିଲେ ଯେଉଁଆଡ଼େ ଗଲେ ବି ଅଣ୍ଡାଥିବା କୋଷାକୁ ନିଜ ପାଖରୁ ଆଦୌ ଛାଡ଼େ ନାହିଁ । ମାଆ ସ୍ନେହର ଏହା ଏକ ଅତି ସୁନ୍ଦର ଉଦାହରଣ । ଏଡ଼ିକି ଛୋଟ ପ୍ରାଣୀ ହେଲେ ମଧ୍ୟ ବାତ୍ସଲ୍ୟମମତା ତା'ର ସତରେ କେତେ ! ପେଟରେ ଥିବା କୋଷାଟି ଅକସ୍ମାତ୍ ଖସିଗଲେ ସେ ବିକଳରେ ତାକୁ ସାଉଁଟି ଆଣିଥାଏ ।

ଗୋଡ଼ ସାହାଯ୍ୟରେ ତାକୁ ଆଣି ପୁଣି ପେଟ ତଳେ ଛୁଆଁକୁ ମାଆ ଢାକିଦେବା ପରି ଢାକି ପକାଏ । ସବୁଠାରୁ ମଜା କଥା ହେଲା ପରୀକ୍ଷା କରି ଦେଖାଯାଇଛି ଯେ ଅଣ୍ଡାଥିବା କୋଷାକୁ ଯଦି ନିଆ ହୋଇଯାଏ ଓ ଅଣ୍ଡା ସ୍ଥାନରେ ସେହିପରି ଏକ ଛୋଟ ବଲ୍‌ପରି କୌଣସି ଜିନିଷ ତା' ପାଖରେ ଦିଆଯାଏ, ତାହାହେଲେ ଗଧିଆ ବୁଢ଼ିଆଣୀ ତାକୁ ବି ଧରିନେଇଯାଏ ତା'ର ନିଜ ଅଣ୍ଡା ଭାବି ।

ଜୁନ୍ ବା ଜୁଲାଇ ମାସ ବେଳକୁ ଅଣ୍ଡାଗୁଡ଼ିକ ଫୁଟିବା ଆରମ୍ଭ କରେ । ଏହି ସମୟରେ ସ୍ତ୍ରୀ ବୁଢ଼ିଆଣୀ ପେଟରେ ଧରିଥିବା ଅଣ୍ଡାକୋଷାକୁ ଖସାଇ ଦିଏ । କୋଷାଟିକୁ ଗୋଟିଏ ସ୍ଥାନରେ ଖସାଇସାରିବା ପରେ କୋଷା ଉପରେ ତମ୍ବୁ ଘୋଡ଼ାଇବା ପରି କିଛି ସୂତା ଆଚ୍ଛାଦିତ କରିବାରେ ଲାଗିପଡ଼େ । ଏହି ସୂତାଗୁଡ଼ିକ କୋଷାଟିକୁ ଜଗି ସୁରକ୍ଷିତ କରିଥାଏ । କିଛିଦିନ ମଧ୍ୟରେ କୋଷାରେ ଛୁଆଗୁଡ଼ିକର ବିକାଶ ସଂପୂର୍ଣ୍ଣ ହୋଇଯାଇଥାଏ ଓ ଛୁଆମାନଙ୍କର ଦୁଇଥର ଚୋପା ଛାଡ଼ିଯାଏ (Moulting) । ଅଣ୍ଡାଗୁଡ଼ିକ ଫୁଟିବା ପରେ ଛୁଆଗୁଡ଼ିକ ରେଶମୀ କୋଷା ମଧ୍ୟରେ କିଛି ସମୟ ରହନ୍ତି । ତା'ପରେ ଅନୁକୂଳ ପାଗ ଆସିଗଲେ ଛୁଆଗୁଡ଼ିକ ମାଆ ପିଠି ଉପରେ ଚଢ଼ିଯାଆନ୍ତି ଓ ମାଆ ସେମାନଙ୍କୁ ଧରି ଯିବାଆସିବା କରୁଥାଏ । ଛୁଆଗୁଡ଼ିକ ଏତେ ସଂଖ୍ୟାରେ ବାହାରିଥାଆନ୍ତି ଯେ ମାଆ ପିଠି ଉପରେ ସ୍ତର ସ୍ତର ହୋଇ ଗଦା ହେଲାପରି ଦେଖାଯାଏ । ଏହାଦ୍ୱାରା ମାଆର ପିଠି ଆଉ ଦେଖାଯାଏ ନାହିଁ; ଛୁଆମାନଙ୍କ ଦ୍ୱାରା ଲୁଚିଯାଉଥାଏ । ଛୁଆମାନେ ମାଆ ପିଠି ଉପରେ ଥିବାବେଳେ କିଛି ଖାଆନ୍ତି ନାହିଁ । ପିଠିରେ ଥିବାବେଳେ କୌଣସି ଛୁଆ ମାଆପିଠିରୁ ଗଳି ପଡ଼ିଲେ ମାଆ ଆଉ କିଛି ଖାତିର କରି ନ ଥାଏ ସେ ଛୁଆ ପ୍ରତି । କିନ୍ତୁ ଛୁଆଟି ଯଦି ମାଆ ପିଠିକୁ ଚଢ଼ିଗଲା ତ ଭଲ; ନଚେତ୍ ସେମିତି ତଳେ ପଡ଼ିରୁହେ ବା ମରିଯାଏ । ବର୍ଷା ହେବା ସମୟରେ ସେ ପାଣି ନ ପଡ଼ିବା ନିରାପଦ ସ୍ଥାନ ଖୋଜି ଚାଲିଯାଏ କୋଷାକୁ ପେଟରେ ଧରି । ଅକସ୍ମାତ୍ ବର୍ଷା ପାଣି ପଡ଼ି ଭିଜିଗଲେ, ମାଆ ବୁଢ଼ିଆଣୀ ମୁହଁକୁ ତଳକୁ ଓ ପେଟକୁ ଉପରକୁ ଟେକି ସୂର୍ଯ୍ୟଙ୍କ ଆଡ଼କୁ ବା ଖରାଆଡ଼କୁ ଦେଖାଇଥାଏ କୋଷା ଶୁଖିବା ପାଇଁ । ତେଣୁ ଯେପର୍ଯ୍ୟନ୍ତ ମାଆ ପାଖରେ ଅଣ୍ଡାଥିବା କୋଷା ରୁହେ ସେ ପର୍ଯ୍ୟନ୍ତ ମାଆ ଖୁବ୍ ଯତ୍ନବାନ୍ ଥାଏ ଛୁଆଗୁଡ଼ିକ କୋଷାରୁ ବାହାରିବା ପର୍ଯ୍ୟନ୍ତ । ଯେତେ ସାବଧାନତା ଅବଲମ୍ବନ କରାଯାଇପାରେ ମାଆ ସେତିକି ଦାୟିତ୍ୱ ତୁଲାଇଥାଏ ଅତି ସୁରୁଖୁରୁରେ ।

**ମାଆ ବୁଢ଼ିଆଣୀର ସ୍ପଷ୍ଟ ଦୃଷ୍ଟି**

ଗଧିଆ ବୁଢ଼ିଆଣୀର ଆଖିଗୁଡ଼ିକ ବୁଢ଼ିଆଣୀ ପାଇଁ ଖୁବ୍ ସହାୟକ ହୋଇଥାଏ । ମାଆ ପିଠିରେ ତା'ର ଛୁଆଗୁଡ଼ିକ ପିଲା ଲାଉ ହୋଇ ମାଆ ପିଠିରେ ଖେଳିବା ପରି ଥିବାବେଳେ ସମୁଦାୟ ପିଠି ଓ ମୁଣ୍ଡ ଅଂଶ ଆଚ୍ଛାଦିତ ହୋଇଥାଏ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଯେ ଏତେ ସଂଖ୍ୟାରେ ଛୁଆମାନେ ଥିଲେ ସୁଦ୍ଧା ମାଆର ଆଖିଗୁଡ଼ିକୁ ସେମାନେ ଘୋଡ଼ାଇ ଦେଇ ନ ଥାଆନ୍ତି ବା ଆଖି ଉପରକୁ ଆସି ଆଖିକୁ ଲୁଚାଇ ଦିଅନ୍ତି ନାହିଁ । ଅକସ୍ମାତ୍ କୌଣସି ଛୁଆ ଆଖି ଉପରକୁ ଭୁଲରେ ଆସିଗଲେ ଆମେ ମୁଣ୍ଡବାଳ କୁଣ୍ଡାଇବା ପରି ମାଆ ବୁଢ଼ିଆଣୀ ତା'ର ସ୍ପର୍ଶପାଦ ସାହାଯ୍ୟରେ ଛୁଆ ବୁଢ଼ିଆଣୀକୁ ଆଖି ଉପରୁ ପଛପାଖକୁ ଠେଲି ଦେଉଥାଏ । ଅନ୍ୟ ବୁଢ଼ିଆଣୀମାନଙ୍କ ଅପେକ୍ଷା ଗଧିଆ ବୁଢ଼ିଆଣୀର ଚକ୍ଷୁଗୁଡ଼ିକ ତୀକ୍ଷ୍ଣ । ତେଣୁ ସେ ଛୁଆମାନଙ୍କ ଉପରେ ନଜର ରଖିବା ସହ ନିଜ ଶିକାରକୁ ମଧ୍ୟ ଆଖି ଆଗରୁ ଖସାଇପାରେ ନାହିଁ ।

**ଗଧିଆ ବୁଢ଼ିଆଣୀର ଶତ୍ରୁ**

ଗାତ ମଧ୍ୟରେ ରହିବା ହିଁ ଏ ବୁଢ଼ିଆଣୀର ଆଉ ଏକ ବୈଶିଷ୍ଟ୍ୟ । ତେଣୁ ନିରାପଦରେ ରହୁଥିବାରୁ ଶତ୍ରୁମାନଙ୍କର ସମ୍ଭାବନା ଖୁବ୍ କମ୍ । ବିପଦର ସମ୍ଭାବନା ମଧ୍ୟ ଖୁବ୍ କମ୍ ପରିମାଣର । ତଥାପି ଏମାନଙ୍କର ଦୁଇଟି ମୁଖ୍ୟ ଶତ୍ରୁ ଦେଖାଯାଏ ।

ପ୍ରଥମଟି ହେଉଛି ମାଣ୍ଟିସ୍‌ମାଛି (Mantisfly) ଓ ଦ୍ୱିତୀୟଟି ହେଉଛି ଶିକାରୀ ବିରୁଡ଼ି (Hunting Wasp) । ମାଣ୍ଟିସ୍‌ମାଛି କୋଷାମଧ୍ୟସ୍ଥ ଅଣ୍ଡାଗୁଡ଼ିକୁ ଖାଇବାବେଳେ ଉଭୟ ଶତ୍ରୁ ବୁଢ଼ିଆଣୀମାନଙ୍କୁ ଆକ୍ରମଣ କରି ମାରିପକାନ୍ତି ଓ ତା'କୁ ତାଙ୍କର ଲାର୍ଭାମାନଙ୍କ ପାଇଁ ଖାଦ୍ୟ ଭାବରେ ଲଗାନ୍ତି । ଶିକାରୀ ବିରୁଡ଼ି ଭୂଇଁ ଉପରେ ଏଣେ ତେଣେ ଉଡ଼ି ତାଙ୍କର ଶିକାର ଖୋଜିଥାଆନ୍ତି । ଗୋଟିଏ ବିରୁଡ଼ି ଏମିତି ବୁଢ଼ିଆଣୀ ଗାତର ମୁହଁ ପାଖରେ ପଡ଼ିଗଲେ ବିରୁଡ଼ି ଗାତ ଖୋଳି ଖୋଳି ଭିତରକୁ ଚାଲିଯାଏ । ଆଉ ଗାତରେ ପଶିବା ମାତ୍ରେ ବୁଢ଼ିଆଣୀଟି ନିଶ୍ଚିତ ଭାବରେ ଶିକାର ହୋଇପଡ଼େ ।

ଶିକାର କୌଶଳ ଜାଣିବାପାଇଁ ଥରେ ବ୍ରିଷ୍ଟୋ (W S. Bristowe) ନାମକ ଜଣେ ବୈଜ୍ଞାନିକ ଏକପ୍ରକାର ଗଧିଆ ବୁଢ଼ିଆଣୀ (*Arctosa perita*)ର ଗାତ ପାଖ ମୁହଁରେ ଗୋଟିଏ ଘାସ ଛୁଆଁଇଲେ । ହଠାତ୍ ଏ ବୁଢ଼ିଆଣୀ ରେଶମ ଜାଲ ଆବୃତ କରିଥିବା ରେଶମକୁ ଟାଣିନେଇ ସେ ଜାଲକୁ ତା' ଉପରେ ଗାତ ମଧ୍ୟରେ ପରଦା ପରି ଘୋଡ଼ାଇ ଦେଲା । ତା'ପରେ ଛୋଟ ଖୋଲାଥିବା ମୁହଁଟିକୁ ପୁଣି ରେଶମ ଗ୍ରନ୍ଥିରୁ ରେଶମ ନିର୍ଗତ କରି ବନ୍ଦ କରିଦେଉଥିଲା ସଂପୂର୍ଣ୍ଣ ଭାବରେ । ତେଣୁ ଗଧିଆ ବୁଢ଼ିଆଣୀ ବିରୁଡ଼ିଠାରୁ ଏ ଉପାୟରେ ନିଜକୁ ରକ୍ଷା କରିଥାଏ ।

**ସତରେ କଅଣ ଗଧିଆ ପରି !**

ଗଧିଆ ବୁଢ଼ିଆଣୀ ନାଁ ଶୁଣିଲେ ଲାଗିବ ବା ପ୍ରଶ୍ନ ମନରେ ଆସିବା ସ୍ୱାଭାବିକ ଯେ ଏ ବୁଢ଼ିଆଣୀ କଅଣ ସତରେ ଗଧିଆ ପରି ଦେଖିବାକୁ ନା ଗଧିଆ ପରି କାର୍ଯ୍ୟକଳାପ । ହଁ, ଏ ବୁଢ଼ିଆଣୀର କାର୍ଯ୍ୟକଳାପ ଗଧିଆ ପରି ହୋଇଥିବାରୁ ତା'ର ନାମକରଣ ଏପରି ହୋଇଛି ! ଏ ପ୍ରାଣୀ ଅନ୍ୟ ବୁଢ଼ିଆଣୀମାନଙ୍କ ପରି ଜାଲରେ ଶିକାର ନ ଧରି ଗାତ ମଧ୍ୟରେ ରହି ଶିକାରକୁ ଖପ୍ କରି ଧରିଥାଏ ଅଥବା ଶିକାର ନଜରକୁ ଆସିଲେ ତା' ପଛେ ପଛେ ଯାଇ ତାକୁ ଖୁବ୍ ଶକ୍ତ ମାଢ଼ି ସାହାଯ୍ୟରେ କାମୁଡ଼ି ଧରି ମାରିପକାଏ । ତା'ପରେ ଖାଇବା ଆରମ୍ଭ କରେ । ଦ୍ୱିତୀୟ କଥା ହେଉଛି, ଏହା ସହଜରେ ଅନ୍ୟର ଶିକାର ହୋଇପାରେ ନାହିଁ । ଆଉ ଯଦି କିଏ ଏହାକୁ ଶିକାର କରିବାକୁ ଗାତ ମଧ୍ୟକୁ ଆସେ, ବୁଢ଼ିଆଣୀ ଗାତ ମଧ୍ୟରେ ଥାଇ ବୁଣିଥିବା ରେଶମ ଜାଲକୁ ନିଜ ଦେହରେ ଘୋଡ଼ାଇ ଦେଇ ଗୋଟିଏ ଛୋଟ ବାଟ ଦେଇ ଅନେଇଥାଏ ଯେ କିଏ ସତରେ ମାରିବାକୁ ଆସୁଛି କି ନାହିଁ । ଆସିଲେ ସେ ଛୋଟ ବାଟଟିକୁ ମଧ୍ୟ ନିଜ ଦେହରୁ ସୂତା ପୁଣି ବାହାର କରି ବନ୍ଦ କରିଦିଏ । ତେଣୁ ଗଧିଆ ବୁଢ଼ିଆଣୀ ବାସ୍ତବିକ୍ ଗୋଟିଏ ଦକ୍ଷ ଓ ବୁଦ୍ଧିମାନ୍ ଶିକାରୀ ହୋଇଥିବାରୁ ତା'ର ନାମ ଏପରି କରାଯାଇଛି ।

ଛୋଟିଆ ପ୍ରାଣୀଟିଏ ହେଲେ ବି ଏ ବୁଢ଼ିଆଣୀ ପାଖରେ ଅସୀମ ଧରଣର ମାତୃସ୍ନେହ ଦେଖାଯାଏ । ଛୁଆ ଫୁଟିବା ପୂର୍ବରୁ ଅଣ୍ଡାଗୁଡ଼ିକୁ କୋଷାସହ ଧରି ବୁଲିବା ଓ ଛୁଆଗୁଡ଼ିକୁ ମଣିଷ ତା'ର ଛୁଆକୁ ପିଠିରେ ଧରିବା ପରି ଏ ବୁଢ଼ିଆଣୀ ଛୁଆମାନଙ୍କୁ ଧରି ବୁଲିବା ଆଉ ଏକ ଦେଖିବା ଜିନିଷ । ଅପତ୍ୟ ଯତ୍ନ (Parental Care) ବଡ଼ ବଡ଼ ମେରୁଦଣ୍ଡୀ ପ୍ରାଣୀଙ୍କଠାରେ ଭଲଭାବରେ ଦେଖାଯାଏ । କିନ୍ତୁ ଅମେରୁଦଣ୍ଡୀ ପ୍ରାଣୀ ଏ କ୍ଷୁଦ୍ର ବୁଢ଼ିଆଣୀମାନଙ୍କ ଠାରେ ଏ ପ୍ରକାର ଯତ୍ନ ଦେଖାଯିବା ସତରେ କମ୍ କଥା ନୁହେଁ । ତେଣୁ ଯେହେତୁ ଅମେରୁଦଣ୍ଡୀ ପ୍ରାଣୀମାନଙ୍କର ସୃଷ୍ଟି ପୃଥିବୀରେ ପ୍ରଥମେ ହୋଇଥିବାର ବିଶ୍ୱାସ କରାଯାଏ । ସେହି ଗୁଣ ବିଶେଷ ଭାବରେ ମେରୁଦଣ୍ଡୀପ୍ରାଣୀମାନଙ୍କ ଠାରେ ପରିଲକ୍ଷିତ ହୋଇଥାଏ । ବୁଢ଼ିଆଣୀ ପରିବାରର ସମସ୍ତ ବୁଢ଼ିଆଣୀମାନଙ୍କ ଠାରେ ଏ ଗୁଣ ଦେଖାଗଲେ ମଧ୍ୟ ଗଧିଆ ବୁଢ଼ିଆଣୀଙ୍କର ଅଣ୍ଡା ଓ ଛୁଆମାନଙ୍କ ପ୍ରତି ଦାୟିତ୍ୱ ଅଧିକ ପରିମାଣରେ ନଜରକୁ ଆସିଥାଏ । ଏପରି ପ୍ରାଣୀଟିର ଦାୟିତ୍ୱ, କାର୍ଯ୍ୟକଳାପ ଓ ବ୍ୟବହାର ସତରେ କି ଅଦ୍ଭୁତ ରକମର !

# କଙ୍କଡ଼ା ବୁଢ଼ିଆଣୀ

## ପ୍ରାଣୀ ଏକ ଅଦ୍ଭୁତ ବୁଢ଼ିଆଣୀ

କଙ୍କଡ଼ାକୁ କିଏ ବା ନ ଜାଣେ ! କାହାପାଇଁ କଙ୍କଡ଼ା ଏକ ସୁସ୍ୱାଦୁ ଖାଦ୍ୟ ବେଳେ ଆଉ କିଏ ଦଶରଥ ବୋଲି ପୂଜା କରିବାର ଦେଖାଯାଏ । ଦଶଟି ଗୋଡ଼ଥିବାରୁ ଅବଶ୍ୟ ଏହାକୁ ଦଶରଥ ବୋଲି କୁହାଯାଏ ବା କେତେକ ଦଶରଥଙ୍କ ଅବତାର ବୋଲି କୁହନ୍ତି । ଇଂରାଜୀରେ ଏ ପ୍ରାଣୀର ନାଁ କ୍ୟାନ୍ସର (Cancer) ବା କ୍ରାବ୍ (Crab) । କ୍ୟାନ୍ସର ନାମ ସହିତ ଲୋକମାନେ ବେଶ୍ ପରିଚିତ । କାରଣ ଏହା ଏକ ମାରାତ୍ମକ ବ୍ୟାଧି । ଆଉ ଥରେ ହେଲେ ସେଥିରୁ ବର୍ତ୍ତିବା ବା ବଞ୍ଚିବା ମଧ୍ୟ ବହୁତ କଷ୍ଟ । ଶରୀରରେ କ୍ୟାନ୍ସର ବା କର୍କଟ ରୋଗ ହେଲେ ଅଳ୍ପ ସମୟରେ ଜୋର୍‌ରେ ମାଡ଼ିଯାଏ । ରୋଗୀ କଷ୍ଟ ପାଏ ଓ ପ୍ରାୟ ଅଧିକାଂଶ ରୋଗୀ ଏ ରୋଗରେ ଅଳ୍ପ ସମୟ ମଧ୍ୟରେ ମରିଯିବାର ଦେଖାଯାଏ । ହଁ କଙ୍କଡ଼ାର ଆଉ ଏକ ଭଲ ନାମ କର୍କଟ । କଙ୍କଡ଼ା ଯେପରି ଏଣେ ତେଣେ ସହଜରେ ମାଡ଼ିଯାଏ ଓ ତାକୁ ନଈକୂଳ ବା ସମୁଦ୍ରକୂଳରେ ଧରି ହୁଏ ନାହିଁ ଅଥବା ଗୋଟିଏ ଗାତରେ ହାତ ପୂରାଇ ଧରିବାକୁ ଗଲେ ସେ ଅନ୍ୟ ଗାତପଟେ ବାହାରି ଚାଲିଯାଏ ଠିକ୍ ସେହିପରି କର୍କଟ ରୋଗ ଖୁବ୍ ଜୋର୍‌ରେ ଶରୀର ମଧ୍ୟରେ ମାଡ଼ି ମାଡ଼ି ଯାଇ ରୋଗୀକୁ ଗ୍ରାସ କରେ । ଏଥିପାଇଁ କର୍କଟ ବା କଙ୍କଡ଼ା ସହିତ ପ୍ରାୟ ସମସ୍ତେ ଅବଗତ । ତା' ଛଡ଼ା ଏ କଙ୍କଡ଼ା ପରି ଜୀବ ମଧ୍ୟ କେତେକ ମଧୁର ଜଳ (ବିଲ କଙ୍କଡ଼ା) ରେ ତ' କେତେକ ମଧୁର ଲୁଣିମିଶା ଜଳ (ଚିଲିକା କଙ୍କଡ଼ା)ରେ ଓ ଆଉ କେତେକ ଅନେକ ସଂଖ୍ୟାରେ ଅନେକ ପ୍ରକାରର ଦେଖାଯାଆନ୍ତି ସମୁଦ୍ରର ଲୁଣିପାଣିରେ । ରୂପ ଭିନ୍ନ ଭିନ୍ନ ହେଲେବି କାର୍ଯ୍ୟ ଏମାନଙ୍କର ପ୍ରାୟ ଏକାପରି । କଙ୍କଡ଼ା ପରି ଆମ ପ୍ରାଣିଜଗତ୍‌ରେ ଏକପ୍ରକାର ବୁଢ଼ିଆଣୀ ଦେଖାଯାଏ । ସେ ବିଷୟରେ ଦେଖିବା ।

## କଙ୍କଡ଼ା ବୁଢ଼ିଆଣୀର ନାମକରଣ

ବୁଢ଼ିଆଣୀଟି ଦେଖିବାପାଇଁ କଙ୍କଡ଼ାପରି ହୋଇଥିବାରୁ ତାକୁ "କଙ୍କଡ଼ା ବୁଢ଼ିଆଣୀ" (Crab Spider) ବୋଲି କୁହାଯାଏ । ଅର୍ଥାତ୍ ଗୋଡ଼ଗୁଡ଼ିକ କଙ୍କଡ଼ା ପରି ଲମ୍ବା ଓ ବଙ୍କା ହୋଇଥିବାରୁ ଜଣାପଡ଼େ ସତେଯେପରି ଏ ବୁଢ଼ିଆଣୀ ଶରୀରରେ କିଏ ଛୋଟ କଙ୍କଡ଼ାର ଗୋଡ଼ଗୁଡ଼ିକ ଖଞ୍ଜି ଦେଇଛି ! ଆଉ ମଧ୍ୟ ସମୁଦ୍ରକୂଳରେ କଙ୍କଡ଼ାଗୁଡ଼ିକ ଏଣେ ତେଣେ ଯିବାଆସିବା କରିବାପରି ଏ ବୁଢ଼ିଆଣୀଗୁଡ଼ିକ ରହିବା ସ୍ଥାନରେ ରହିବା ସହ ଖୁବ୍ ଜୋରରେ ଦୁଇ କଡ଼କୁ ଏପାଖ ସେପାଖ ହୋଇ ଛୋଟ ରାସ୍ତା ମଧ୍ୟ ଦେଇ ଗଳି ପଶି ପଳାଇବାର ଦେଖାଯାଏ । ତୃତୀୟ କାରଣ ହେଉଛି ଯେ କଙ୍କଡ଼ାର ଗୋଡ଼ (ବୁଢ଼ା ଗୋଡ଼)ରେ କଣ୍ଟା ଅଂଶ ଥିବାପରି ଏହାର ଗୋଡ଼ଗୁଡ଼ିକ ଲମ୍ବ ଆଂଶୁ ପରି ଆକୃତି ସବୁରେ ପୂର୍ଣ୍ଣ ଥାଏ । ତିନୋଟି ଆକୃତିଗତ କାରଣ ଯୋଗୁଁ ଏ ବୁଢ଼ିଆଣୀର କଙ୍କଡ଼ା ସହ ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ । ସେଥିପାଇଁ ଏପରି ନାମକରଣ କରାଯାଇଛି ।

ଅନ୍ୟସବୁ ବୁଢ଼ିଆଣୀମାନଙ୍କ ପରି ଏ ବି ଗୋଟିଏ ସନ୍ଧିପଦ ପ୍ରାଣୀ ଓ ଏହା ଆରାକ୍‌ନିଡ଼ା ଶ୍ରେଣୀର ଅନ୍ତର୍ଭୁକ୍ତ । ଏ ବର୍ଗର ବୁଢ଼ିଆଣୀମାନେ ମୁଖ୍ୟତଃ ଦୁଇଟି ପରିବାରର ଥାଆନ୍ତି । ଏ ଦୁଇଟି ପରିବାର (Family-Sparassidae ଓ Thomisidae)ର ଭିନ୍ନ ଭିନ୍ନ ପ୍ରକାର ବୁଢ଼ିଆଣୀ ଥାଆନ୍ତି । ପ୍ରଥମ ପରିବାରର ସାଧାରଣ ବୁଢ଼ିଆଣୀ ମାତ୍ର ଗୋଟିଏ *(Micrommata virescens)* । ଏହା ସାଧାରଣ ଭାବେ କୁହାଯାଏ 'ସବୁଜ କଙ୍କଡ଼ା ବୁଢ଼ିଆଣୀ' । ମାତ୍ର ଅନ୍ୟ ସବୁ ବୁଢ଼ିଆଣୀ ଦ୍ୱିତୀୟ ପରିବାରର । ଅର୍ଥାତ୍ ଥୋମିସିଡ଼େ



କଙ୍କଡ଼ା ଗୋଡ଼ ପରି କଙ୍କଡ଼ା ବୁଢ଼ିଆଣୀର ଆଂଶୁଯୁକ୍ତ ଗୋଡ଼

ପରିବାରର ବୁଢ଼ିଆଣୀ ସଂଖ୍ୟା ବେଶ୍ ଅନେକ । ତେବେ ମୁଖ୍ୟତଃ ଦୁଇଟି ବୁଢ଼ିଆଣୀ *(Tomisus onusus* ଓ *Misumena vatia)* ବେଶି ନଜରକୁ ଆସିଥାଏ । ବ୍ରିଟେନ୍‌ରେ କଙ୍କଡ଼ା ବୁଢ଼ିଆଣୀର ପ୍ରକାର ପ୍ରାୟ ୩୯ (Species) ବୋଲି ଜଣାଯାଇଛି । ସଂଖ୍ୟା ଅନୁସାରେ ଗୋଟିଏ ବଡ଼ ଆଶ୍ଚର୍ଯ୍ୟଜନକ କଥା ହେଉଛି ଯେ ଥୋମିସିଡ଼େ ପରିବାରରେ ଅନେକ ପ୍ରକାର ବୁଢ଼ିଆଣୀ ଥିବା ସ୍ଥଳେ ସ୍ପାରାସିଡ଼େ ପରିବାରରେ ଦେଖାଯାଏ ଗୋଟିଏ ମାତ୍ର କଙ୍କଡ଼ା ବୁଢ଼ିଆଣୀ ।

## କଙ୍କଡ଼ା ବୁଢ଼ିଆଣୀର ଶରୀର ଗଠନ

ମଜା କଥା ହେଉଛି ଏ ବୁଢ଼ିଆଣୀଗୁଡ଼ିକ ପୃଥିବୀର ଯେଉଁଠାରେ ଦେଖାଗଲେ ବି ସମସ୍ତେ ଦେଖିବାକୁ ପ୍ରାୟ ଏକା ପରି । ତେବେ ଅଧିକାଂଶ ବୁଢ଼ିଆଣୀର ପ୍ରିୟ ସ୍ଥାନ ହେଉଛି ଫୁଟନ୍ତା ଫୁଲ । ଅର୍ଥାତ୍ ଫୁଲଗୁଡ଼ିକରେ ଏମାନେ ବେଶି ଦେଖାଯାଆନ୍ତି । ଆକାରରେ ଖୁବ୍ ଛୋଟ । ସବୁଠାରୁ ବଡ଼ ବୁଢ଼ିଆଣୀ (ଥୋମିସିଡ଼େ ପରିବାରର)ର ଆକାର ଗୋଟିଏ ଇଞ୍ଚର ଏକ ଚତୁର୍ଥାଂଶରୁ କମ୍ ଅର୍ଥାତ୍ ପ୍ରାୟ ଛଅ ମିଲିମିଟର । କିନ୍ତୁ ସ୍ପାରାସିଡ଼େ ପରିବାରର ବୁଢ଼ିଆଣୀ ଆକାରରେ ଅପେକ୍ଷାକୃତ ବଡ଼ । ସ୍ତ୍ରୀ ଲମ୍ବରେ ଅଧ ଇଞ୍ଚ ବେଳେ ପୁରୁଷର ଆକାର ଗୋଟିଏ ଇଞ୍ଚର ଏକ ତୃତୀୟାଂଶ । ମୋଟାମୋଟି ପୁରୁଷ ବୁଢ଼ିଆଣୀଗୁଡ଼ିକ ସ୍ତ୍ରୀମାନଙ୍କ ଠାରୁ ସାନ । ବର୍ଣ୍ଣ ବିଭିନ୍ନ ପ୍ରକାର । ଶିରୋବକ୍ଷ (Cephalothorax) ସାମାନ୍ୟ ଲମ୍ବ; ମାତ୍ର ପେଟ ପୂରାପୂରି ଦେଖିବାକୁ ଗୋଲାକାର । ଆଠଟି ଗୋଡ଼ ଠିକ୍ କଙ୍କଡ଼ା ପରି ଲମ୍ବ, ଭାଙ୍ଗ ଭାଙ୍ଗ ଓ ଗୋଡ଼ର ଶେଷଭାଗ ମଧ୍ୟ କଙ୍କଡ଼ା ଚାଲିବା ଗୋଡ଼ ପରି ବଙ୍କା ଓ ମୁନିଆ । ଗୋଡ଼ଗୁଡ଼ିକ ଆଂଶୁ (Bristle)ରେ ପୂର୍ଣ୍ଣ । ମୁଣ୍ଡ ପାଖରେ କେତେଗୁଡ଼ିଏ ଆଖି ରହିଥାଏ । ଏଗୁଡ଼ିକ କଳା କଳା ଓ ରଙ୍ଗିନ



ଫୁଲ ଉପରେ ବସିଥିବା ସ୍ତ୍ରୀ ଓ ପୁରୁଷ କଙ୍କଡ଼ା ବୁଢ଼ିଆଣୀ

ଶରୀରରେ ସ୍ପଷ୍ଟ ଜଣା ପଡୁଥାଏ । ମୁଣ୍ଡର ଅଗ୍ରଭାଗରେ ଆଦ୍ୟସଂଦଂଶକ(Chelicera)ବା ବିଷଦାନ୍ତ (Fang) ଦୁଇଟି ରହିଥାଏ । ଏହା ଖୁବ୍ ଶକ୍ତ । ଦଂଶକ ଦୁଇଟି ପାଖକୁ ଲାଗି ରହିଥାଏ ଲମ୍ୱାଳିଆ ସ୍ପର୍ଶପାଦ (Pedipalp) ଦୁଇଟି । ଏ ସ୍ପର୍ଶପାଦ ଦୁଇଟି ଅଧିକାଂଶ ସମୟରେ ହଲ ହଲ ହେଉଥିବାର ଦେଖାଯାଏ । ଆଠଟି ଗୋଡ଼ ବାହାରି ଥାଏ ଶିରୋବକ୍ଷ ସ୍ଥାନରୁ ।

### ଶରୀରର ବର୍ଣ୍ଣ ଓ ଆତ୍ମଗୋପନ (Camouflage)

କଙ୍କଡ଼ା ବୁଢ଼ିଆଣୀମାନଙ୍କର ବର୍ଣ୍ଣ ବିଭିନ୍ନ ରଂଗର । ସେମାନେ ତାଙ୍କ ଶରୀରର ବର୍ଣ୍ଣ ଅନୁସାରେ ବିଭିନ୍ନ ଫୁଲଗୁଡ଼ିକରେ ବସିବାର ଦେଖାଯାଏ । କେତେକ ଅଧିକାଂଶ ସମୟ ଫୁଲରେ କାଟିବା ବେଳେ କେତେକ ତଳେ ପଡ଼ିଥିବା କାଠିକୁଟା ବା ପତ୍ର ଆଦିରେ ଏବଂ ଆଉ କେତେକ ଗଛର ଡାଳ ବା ସବୁଜ ପତ୍ର ଆଦିରେ ସମୟ ବିତାନ୍ତି । ଏ ସବୁ ସ୍ଥାନରେ ବସିଥିବା ସମୟରେ ମୁଣ୍ଡଟି ତଳକୁ ଓ ଗୋଡ଼ଗୁଡ଼ିକ ଦୁଇକଡ଼କୁ କରି ଏପରି ବସିଥାଆନ୍ତି ଯେ ଜଣାପଡ଼େ ସତେଯେପରି ଖଣ୍ଡିଏ ପତ୍ର ! ଆଉ କେତେକ ନିଜର ଶରୀରର ବିଭିନ୍ନ ରଂଗ ନେଇ ସେପରି ପାରିପାର୍ଶ୍ୱିକ ପରିସ୍ଥିତି ଦେଖି ବସିବାରେ ଦେଖାଯାଏ । ଉଦାହରଣସ୍ୱରୂପ ଏକପ୍ରକାର କଙ୍କଡ଼ା ବୁଢ଼ିଆଣୀ *(Thomisus onustus)* ଦେଖିବାକୁ ଖୁବ୍ ଉଜ୍ଜ୍ୱଳ ଗୋଲାପୀ । ସେଥିପାଇଁ ସେହିଭଳି ଗୋଲାପ ରଂଗର ଫୁଲ ବା ଫୁଲଯୁକ୍ତ ଗୁଳ୍ମାଦି (Orchids)ରେ ବସିଥିବା ସମୟରେ ସଂପୂର୍ଣ୍ଣ ଭାବରେ ମିଶିଯାଏ । ଆଦୌ ଜଣାପଡ଼େ ନାହିଁ ଯେ ଗୋଟିଏ ବୁଢ଼ିଆଣୀ ସେ ସ୍ଥାନରେ ବସିଛି ବୋଲି । ଆଉ ଏକ ବୁଢ଼ିଆଣୀ *(Misumena vatia)* ଦେଖାଯାଏ କେବଳ ଧଳା ବା ହଳଦିଆ ଫୁଲ ଥିବା ଗଛଗୁଡ଼ିକରେ ଦେଖାଯାଏ । ଏ ପ୍ରକାର ବୁଢ଼ିଆଣୀକୁ କୁହାଯାଏ 'ଶ୍ୱେତ ମୃତ୍ୟୁ'



ପରିବେଶ ସହ ଖାପଖୁଆଇ ନିଜକୁ ଶତ୍ରୁ ମୁହଁରୁ ବଞ୍ଚାଇବାପାଇଁ ନିଜ ବର୍ଣ୍ଣ ସହ ମିଶିଯାଉଥିବା
ଏକ ଫୁଲ ଉପରେ କଙ୍କଡ଼ା ବୁଢ଼ିଆଣୀର ଅବସ୍ଥାନ

(White Death) । ଏପରି ବୁଢ଼ିଆଣୀକୁ ତାଙ୍କ ରଙ୍ଗ ବ୍ୟତୀତ ଆଉ ଏକ ରଙ୍ଗର ଫୁଲ ବା ପତ୍ର ଉପରେ ଛାଡ଼ିଦେଲେ ସେମାନେ ତାଙ୍କ ରଙ୍ଗ ସହ ମିଶୁଥିବା ଆଉ ଏକ ଫୁଲକୁ ଚାଲିଯିବାର ଦେଖାଯାଏ । ଏହାହିଁ କଙ୍କଡ଼ା ବୁଢ଼ିଆଣୀର ଏକ ବିଶେଷତ୍ୱ । ଏ ପ୍ରକାର ବ୍ୟବହାରକୁ କୁହାଯାଏ ଆତ୍ମଗୋପନ ବା ଛଦ୍ମାବରଣ (Camouflage) । ସେ ନିଜକୁ ଏତେ ମାତ୍ରାରେ ପରିବେଶ ସହିତ ଖାପଖୁଆଇପାରେ ଯେ ତାହା ବଡ଼ ଆଶ୍ଚର୍ଯ୍ୟ ଲାଗେ । ଫୁଲ ବା ପତ୍ରରେ ବସି ନିଜକୁ ଲୁଚାଇବା ସହ ହଳଦିଆ ପୁଂକେଶର ଚକ୍ର (Stamen) ସ୍ପଷ୍ଟ ଦିଶୁଥିବା ଫୁଲରେ ବସି ନିଜେ ଫୁଲସହ ମିଶି ଗୋଟିଏ ଫୁଲପରି ପ୍ରତୀୟମାନ ହୋଇଥାଏ । ଶିକାରୀ ମୁହଁରୁ ବଞ୍ଚାଇବାପାଇଁ ଏହା ଏକ ସର୍ବୋତ୍କୃଷ୍ଟ ଉପାୟ ।

### କଙ୍କଡ଼ା ବୁଢ଼ିଆଣୀର ଖାଦ୍ୟ ଓ ଶିକାର

ପରିବେଶ ସହ ନିଜର ବର୍ଣ୍ଣ ମିଶିଯାଉଥିବାରୁ ଏ ବୁଢ଼ିଆଣୀ ସହଜରେ ଶିକାର ଧରିବାରେ ସକ୍ଷମ ହୋଇଥାଏ । ଅଧିକାଂଶ ବୁଢ଼ିଆଣୀ ବିଭିନ୍ନ ଫୁଲରେ ବସୁଥିବାରୁ ଫୁଲଗୁଡ଼ିକୁ ଆସୁଥିବା କୀଟପତଙ୍ଗ ଅର୍ଥାତ୍ ଏକପ୍ରକାର ମାଛି (Hoverflies), ମହୁମାଛି ଓ ପ୍ରଜାପତି ଆଦିଙ୍କୁ ଶିକାର କରି ଖାଇବା ଏ ବୁଢ଼ିଆଣୀଙ୍କ ପ୍ରକୃତି । ମହୁ ବା ପରାଗରେଣୁ ସଂଗ୍ରହ କରୁଥିବା କୀଟପତଙ୍ଗହିଁ ଏହାର ମୁଖ୍ୟ ଖାଦ୍ୟ । ହଠାତ୍ କୌଣସି ଶିକାର ହାବୁଡ଼ରେ ପଡ଼ିଗଲେ କଙ୍କଡ଼ା ବୁଢ଼ିଆଣୀ ଶତ୍ରୁର ଶରୀରକୁ ବିଷ ପ୍ରୟୋଗ କରେ । ଆଉ ଏ ବିଷ ହିଁ ବିଷଦାନ୍ତଦ୍ୱାରା ପ୍ରୟୋଗ ହୋଇଥାଏ । ବିଷଦାନ୍ତ ଦୁଇଟି ଖୁବ୍ ମୁନିଆ ଓ ଶକ୍ତ । ତେଣୁ ଶତ୍ରୁ ଶରୀରକୁ ଫୋଡ଼ି

ବିଷ ଛାଡ଼ିବା ସହଜ ହୋଇଥାଏ । ଏ ବିଷ ଉତ୍କଟ ହୋଇଥିବାରୁ ଶତ୍ରୁର ସ୍ନାୟୁ ପ୍ରଣାଳୀ ବା ରକ୍ତ ଅଥବା ଉଭୟ ହଠାତ୍ ଅଚଳ ହୋଇଯାଏ । ସଂଜ୍ଞାହୀନ ଅବସନ୍ନ ପ୍ରାଣୀ ଶରୀରକୁ ତା' ପରେ ଫୋଡ଼ି ଓ ଦଂଶକଦ୍ୱାରା କାଟି ତା ଶରୀରରୁ ତରଳ ଅଂଶକୁ ଶୋଷିବାରେ ଲାଗିପଡ଼େ । ତା' ପରେ ଖୋଳପାକୁ ଛାଡ଼ିଦିଏ । ଏ ବୁଢ଼ିଆଣୀ ଫୁଲରେ ବସୁଥିବା କୀଟପତଙ୍ଗ ବ୍ୟତୀତ ଆହୁରି ଅନେକ ପ୍ରକାର କୀଟ



କଙ୍କଡ଼ା ବୁଢ଼ିଆଣୀ ଦେହ ରଙ୍ଗ ସହ ମିଶିଯାଉଥିବା ହଳଦିଆ ରଙ୍ଗର ଫୁଲରେ ବସିଥିବା ସମୟରେ ମହୁମାଛି ଫୁଲରୁ ମହୁ ସଂଗ୍ରହ କରିବାକୁ ଆସି ଫୁଲରେ ବସିବା ବେଳେ ବୁଢ଼ିଆଣୀର ମହୁମାଛି ଶିକାର

ଓ ଛୋଟ ଛୋଟ ଅମେରୁଦଣ୍ଡୀ ପ୍ରାଣୀମାନଙ୍କୁ ମଧ୍ୟ ମାରି ତାଙ୍କୁ ଶୋଷି ଖାଇବାର ଦେଖାଯାଏ । ବେଳେ ବେଳେ ଏ ବୁଢ଼ିଆଣୀ ଶିକାରର ପେଟକୁ ଫୋଡ଼ି କାମୁଡ଼ି ପକାଏ । ଫଳରେ ଶତ୍ରୁ ବା ଶିକାରଟିର ନିମିଷକ ମଧ୍ୟରେ କେନ୍ଦ୍ର ସ୍ନାୟୁ ପ୍ରଣାଳୀ (Central Nervous System) ପ୍ରଭାବିତ ହୋଇ ମରିଯାଏ ଓ ବୁଢ଼ିଆଣୀକୁ ସୁବିଧା ହୋଇଥାଏ ଅଳ୍ପ ସମୟ ମଧ୍ୟରେ ମାରି ତା'ର ଦେହର ରସକୁ ଶୋଷି ଖାଇବାପାଇଁ । ଏ ବୁଢ଼ିଆଣୀଗୁଡ଼ିକ ଅନ୍ୟ ବୁଢ଼ିଆଣୀମାନଙ୍କ ପରି ଜାଲ (Web) ତିଆରି ନ କରି ଶିକାର କରିଥାଆନ୍ତି । ଜାଲ ତିଆରି ନ କରି ଶିକାରକୁ ଅପେକ୍ଷା କରି ରହିଥାନ୍ତି ସାଧାରଣତଃ ଫୁଲ ବା ପତ୍ରଗୁଡ଼ିକରେ । ତେବେ ଏହାର ଦଂଶକ ବା ବିଷଦାନ୍ତ (Chelicera ବା Fang) ଠିକ୍ ଇଂଜେକ୍ସନ୍ ଛୁଞ୍ଚପରି ଶତ୍ରୁ ଶରୀରକୁ ବିଷ ପ୍ରୟୋଗ କରିଥାଏ ।

**କଙ୍କଡ଼ା ବୁଢ଼ିଆଣୀର କୋଷା, ଅଣ୍ଡା ଓ ଛୁଆ**

ଜାଲ ତିଆରି ନ କରିବା ଏ ବୁଢ଼ିଆଣୀମାନଙ୍କର ସ୍ୱଭାବ । ମିଳନର ଠିକ୍ ପୂର୍ବରୁ ପୁରୁଷ ବୁଢ଼ିଆଣୀ ଦେହରୁ ଏକ ଚୋପା ଛାଡ଼େ । ତା'ପରେ ସେ ଛୋଟିଆ ପଟିପରି ଜାଲ ପ୍ରସ୍ତୁତ କରି ସେ ଜାଲରେ ସେ ନିଜର ଶୁକ୍ରରସ (Seminal Fluid) କାଢ଼ି ରଖେ । ନିର୍ଗତ ଶୁକ୍ରରସକୁ ନିଜ ସ୍ପର୍ଶପାଦ (Pedi-palp) ସାହାଯ୍ୟରେ ଧରି ଧରି ସ୍ତ୍ରୀ ଅନ୍ୱେଷଣରେ ବୁଲୁଥାଏ । ହଠାତ୍ ସ୍ତ୍ରୀ ବୁଢ଼ିଆଣୀ ପାଇଗଲେ ସାମନାସାମନି କିଛି ସମୟ ରୁହନ୍ତି ଓ ତା'ପରେ ପୁରୁଷ ବୁଢ଼ିଆଣୀ ତା' ନିଜ ଗୋଡ଼ରେ ସ୍ତ୍ରୀକୁ ଖୁମ୍ପାଖୁମ୍ପି କରେ । କ୍ରମେ ସ୍ତ୍ରୀହିଁ ପୁରୁଷକୁ ଗ୍ରହଣ କରିବାକୁ ବା ମିଶିବାକୁ ଆଗ୍ରହ ପ୍ରକାଶ କରେ । ତା'ପରେ ପୁରୁଷଟି ସ୍ତ୍ରୀକୁ ଗୋଡ଼ରେ ଧରି ପୂର୍ବରୁ ଧରି ବୁଲୁଥିବା ଶୁକ୍ରକୁ ସ୍ତ୍ରୀ ଜନନେନ୍ଦ୍ରିୟ (Genital Aperture) ରେ ସ୍ଥାପନ କରେ । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ସ୍ତ୍ରୀଟି ଅନ୍ୟ ପୁରୁଷଦ୍ୱାରା ପୂର୍ବରୁ ମିଳିତ ହୋଇଥିଲେ ଅନ୍ୟ ପୁରୁଷକୁ ଆଉ ପାଖରେ ପୂରାଇବାକୁ ଭଲପାଏ ନାହିଁ । ତା' ପରିବର୍ତ୍ତେ ସ୍ତ୍ରୀ



କଙ୍କଡ଼ା ବୁଢ଼ିଆଣୀର ମାଛି ଶିକାର

ତା'ର ଆଗଗୋଡ଼ ଉପରକୁ ଉଠାଇ ଓ ତା'ର ଶରୀରକୁ ଦୋହଲାଇ ପୁରୁଷକୁ ଭୟଭୀତ କରାଏ ବା ଧମକ ଦେଇଥାଏ ପାଖକୁ ନ ଆସିବା ପାଇଁ । ପୁରୁଷ ନ ଡରି ତା ସାମନାରେ ରହିଲେ ସ୍ତ୍ରୀ ତାକୁ ଧରି ମାରିପକାଏ । କିନ୍ତୁ ପୁରୁଷ ଓ ସ୍ତ୍ରୀର ମିଳନ ଥରେ ହେଲେ ମିଳନ ସମୟ ଗୋଟିଏ ମିନିଟ୍‌ରୁ କମ୍ ସମୟ ଲାଗେ ବା ବେଳେ ବେଳେ ଅନେକ ଘଣ୍ଟା ଧରି ଚାଲିଥାଏ ।

ପୁରୁଷ ଓ ସ୍ତ୍ରୀ ମଧ୍ୟରେ ସମୟ ସମୟରେ ଶତ୍ରୁତା ପରିଲକ୍ଷିତ ହେଲେ ମଧ୍ୟ ଏକପ୍ରକାର କଙ୍କଡ଼ା ବୁଢ଼ିଆଣୀ *(Xysticus cristatus)*ର ପୁରୁଷ ସ୍ତ୍ରୀ ମୁହଁରୁ ରକ୍ଷାପାଇବା ପାଇଁ ବା ସ୍ତ୍ରୀ ତାକୁ ଧରି ନ ପାରିବା ପାଇଁ ଏକ କୌଶଳ ଅବଲମ୍ବନ କରିଥାଏ । ଆଲିଙ୍ଗନ ନିମନ୍ତେ ସ୍ତ୍ରୀ ପୁନଶ୍ଚ ପ୍ରାଥମିକ ସଂକେତକୁ ଗ୍ରହଣ କରିବା ପରେ ପୁରୁଷ କିଛି ରେଶମ ସୂତାଦ୍ୱାରା ସ୍ତ୍ରୀ ଗୋଡ଼ଗୁଡ଼ିକୁ ଭୂଇଁରେ ବାନ୍ଧି ରଖେ । ତେଣୁ ମିଳନ ପରେ ସ୍ତ୍ରୀ ସେ ଜାଲରୁ ଖସି ବାହାରି ଯିବାପାଇଁ ବିଳମ୍ବ ହୋଇଥାଏ । ଯାହା ଫଳରେ ପୁରୁଷଟି ସ୍ତ୍ରୀ ଆକ୍ରମଣର ସମ୍ଭାବନାରୁ ନିଜକୁ ରକ୍ଷା କରିପାରିଥାଏ । ବୁଢ଼ିଆଣୀ ଜଗତ୍‌ର ଏ ପ୍ରକାର ବ୍ୟବହାର ହିଁ ବଡ଼ ବିସ୍ମୟକର ।

ଅଧିକାଂଶ କଙ୍କଡ଼ା ବୁଢ଼ିଆଣୀଙ୍କର ଅଣ୍ଡାଦେବା ସମୟ ହେଉଛି ଗ୍ରୀଷ୍ମଋତୁ । ଅଣ୍ଡାଦେବା ସମୟ ଆସିଲେ ସ୍ତ୍ରୀ ଥାଳିଆ ପରି ଆକାରର ଗୋଟିଏ ରେଶମ ଜାଲ ପ୍ରସ୍ତୁତ କରି ତା' ମଧ୍ୟରେ ଅଣ୍ଡାସବୁ ଜମାକରେ । ଅଣ୍ଡା ଦେବାପରେ ଅଣ୍ଡାଗୁଡ଼ିକୁ ପୁଣି ଆଉ ଏକ ସ୍ତର ରେଶମଦ୍ୱାରା ଆବୃତ କରିଥାଏ । ଏପରି ଏକ କୋଷା (Silken Cocoon) ରେଶମରେ ପ୍ରସ୍ତୁତ କରି ଅଣ୍ଡାଗୁଡ଼ିକୁ ନିରାପଦରେ ସାଇତି ରଖେ । ବେଳେ ବେଳେ ସ୍ତ୍ରୀ ମଧ୍ୟ ଏକ ରେଶମ



କଙ୍କଡ଼ା ବୁଢ଼ିଆଣୀର ମୂନିଆ ଦଂଶକ ସାହାଯ୍ୟରେ ଶତ୍ରୁ ଶରୀର ମଧ୍ୟକୁ ବିଷ ପ୍ରୟୋଗ ଓ ଶତ୍ରୁ ଶରୀରରୁ ରସ ଶୋଷଣ

ତମ୍ବୁ (Tent) କରି ତା' ମଧ୍ୟରେ ନିଜେ ରହି ଅଣ୍ଡାଗୁଡ଼ିକୁ ଜଗି ରୁହେ । ଅନେକ ସ୍ତ୍ରୀ ଅଣ୍ଡାଗୁଡ଼ିକ ଉଷୁମା (Incubation) ସମୟରେ କିଛି ନ ଖାଇ ଉପବାସରେ ରହିଥାଆନ୍ତି । ସେଥିପାଇଁ ଏପରି ସ୍ତ୍ରୀଗୁଡ଼ିକ ଖୁବ୍ ସରୁ ଦେଖାଯାଆନ୍ତି । ଅନ୍ୟକେତେକ ଅଣ୍ଡା ଦେଇସାରି ସାଧାରଣ ଅବସ୍ଥାରେ ଶିକାର କରିବା ପରି ଶିକାର କରନ୍ତି; ମାତ୍ର ଅଣ୍ଡା ପାଖରେ ଥାଇ ଶିକାର କରନ୍ତି – ଅଣ୍ଡାଠାରୁ ଦୂରେଇ ଯାଆନ୍ତି ନାହିଁ । ଅଣ୍ଡାଗୁଡ଼ିକ ଫୁଟିବା ପରେ ଛୋଟ ଛୋଟ ବୁଢ଼ିଆଣୀ ବାହାରି ଆସନ୍ତି । ଦେଖିବାକୁ ଛୁଆଗୁଡ଼ିକ ଠିକ୍ ମାଆ ପରି; ମାତ୍ର ବର୍ଣ୍ଣରେ ଥାଏ ଭିନ୍ନତା । କ୍ରମେ ଛୁଆମାନଙ୍କ ଦେହରୁ କିଛି ଥର ଚୋପା ଛାଡ଼େ ଓ ସେମାନେ ବଡ଼ ହୋଇ ମାଆପରି ପୁଣି ତାଙ୍କର ଜୀବନ ଆରମ୍ଭ କରନ୍ତି । ତେବେ ଛୁଆ ନ ବାହାରିବା ପର୍ଯ୍ୟନ୍ତ ମାଆ ଯେପରି ସତର୍କ ଦୃଷ୍ଟି ଅଣ୍ଡାଗୁଡ଼ିକ ଉପରେ ରଖିଥାଏ ତାହା ସତରେ ବିସ୍ମୟକର । ମାଆର ଛୁଆ ବା ଅଣ୍ଡା ପ୍ରତି କେତେ ସ୍ନେହ ତାହା ଏଥିରୁ ସ୍ପଷ୍ଟ ହୋଇଥାଏ । ଖାଲି ବେଙ୍ଗ, ସରୀସୃପ, ପକ୍ଷୀ ଓ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ କ୍ଷେତ୍ରରେ ଯେ ଅପତ୍ୟଯତ୍ନ (Parental Care) ଦୃଷ୍ଟିଗୋଚର ହୁଏ ତାହା ନୁହେଁ ଏପରି ଛୋଟ ଛୋଟ ପ୍ରାଣୀଗୁଡ଼ିକରେ ମଧ୍ୟ ଦେଖାଯାଏ । ଅର୍ଥାତ୍ ବାତ୍ସଲ୍ୟମମତା ହିଁ ସୃଷ୍ଟିର ଏକ ଅନବଦ୍ୟ ବନ୍ଧନ ।

## କଙ୍କଡ଼ା ବୁଢ଼ିଆଣୀର ଶତ୍ରୁ

ଜୀବଜଗତ୍‌ର ପ୍ରତ୍ୟେକ ପ୍ରାଣୀର କିଛି ନା କିଛି ଶତ୍ରୁ ରହିଛନ୍ତି । ସେଥିରୁ ଏ ବୁଢ଼ିଆଣୀ ବା ବାଦ ଯିବ କିପରି ? ତେବେ କଙ୍କଡ଼ା ବୁଢ଼ିଆଣୀମାନଙ୍କର ଶତ୍ରୁ ଅନେକ । ସେମାନେ ହେଉଛନ୍ତି ଛୋଟ ଛୋଟ ସ୍ତନ୍ୟପାୟୀ ପ୍ରାଣୀ, ପକ୍ଷୀ, ସରୀସୃପ ଓ ଉଭୟଚର ପ୍ରାଣୀ ଆଦି । ଏମାନଙ୍କ ବ୍ୟତୀତ ଆଉ କେତେକ



ଏକପ୍ରକାର ମାଛି ହଠାତ୍ ଫୁଲ ଉପରେ ବସିବା ମାତ୍ରକେ କଙ୍କଡ଼ା ବୁଢ଼ିଆଣୀଦ୍ୱାରା କବଳିତ

ପ୍ରାଣୀ ଅର୍ଥାତ୍ ଇକ୍‌ନ୍ୟୁମନ ମାଛି (Ichneumon Flies) ଓ ବିରୁଡ଼ି କେତେକ ଜୀବନ୍ତ ବୁଢ଼ିଆଣୀ ଶରୀରରେହିଁ ଅଣ୍ଡା ଦେଇଦିଅନ୍ତି । ଫଳରେ ବୁଢ଼ିଆଣୀଗୁଡ଼ିକ ମୃତ୍ୟୁମୁଖରେ ପଡ଼ନ୍ତି । ତା' ଛଡ଼ା ଆଉ କେତେକ ବୁଢ଼ିଆଣୀ ପରସ୍ପରକୁ ଖାଇବାଦ୍ୱାରା ମଧ ବୁଢ଼ିଆଣୀ ବଂଶ ହ୍ରାସ ପାଇଥାଏ । କହିବାକୁ ଗଲେ ସତରେ ବୁଢ଼ିଆଣୀମାନଙ୍କର ବଂଶ ନିୟନ୍ତ୍ରଣ ତାଙ୍କ ନିଜଦ୍ୱାରା ସଂଘଟିତ ହୋଇଥାଏ । ତାଙ୍କ ସଂଖ୍ୟାପାଇଁ ନିଜର ଭୂମିକା ବଡ଼ ଗୁରୁତ୍ୱପୂର୍ଣ୍ଣ । ବୁଢ଼ିଆଣୀ ତତ୍ତ୍ୱବିତ୍ ବ୍ରିଷ୍ଟୋ (W.S. Bristowe) ବୁଢ଼ିଆଣୀମାନଙ୍କ ସଂଖ୍ୟା ଉପରେ ଭଲଭାବରେ ଗବେଷଣା କରିଥିବାର ଜଣାଯାଏ । ତେବେ ସେ ବ୍ରିଟେନ୍‌ର ବୁଢ଼ିଆଣୀ ସଂଖ୍ୟା ଉପରେ ଭଲଭାବରେ ପର୍ଯ୍ୟବେକ୍ଷଣ କରିଥିବାରୁ ତାଙ୍କ ମତାନୁଯାୟୀ ପରିବେଶର କୀଟସଂଖ୍ୟା ନିୟନ୍ତ୍ରଣପାଇଁ ବୁଢ଼ିଆଣୀମାନେ କିଛିମାତ୍ରାରେ ଦାୟୀ ।

ଯାହାହେଉନା କାହିଁକି ବୁଢ଼ିଆଣୀ ଜଗତ୍‌ର କଙ୍କଡ଼ା ବୁଢ଼ିଆଣୀର ବୈଶିଷ୍ଟ୍ୟ ଅନେକ । ରୂପରେ କଙ୍କଡ଼ା ପରି ହେବାବେଳକୁ ଜାଲ ତିଆରି ନ କରି ଶିକାର କରିବା ଆହୁରି ଏକ ବିସ୍ମୟ । ପୁଣି ନିଜକୁ ଅନ୍ୟ ଶତ୍ରୁ ମୁହଁରୁ ରକ୍ଷା କରିବା ପାଇଁ ଛଦ୍ମାବରଣ ଉପାୟ ହିଁ ପ୍ରକୃତି କିପରି ତା'କୁ ଶିଖାଇଛି ତାହା ଭାବିଲେ ବଡ଼ ଆଶ୍ଚର୍ଯ୍ୟ ଲାଗେ । କେବଳ ସେତିକି ନୁହେଁ ମିଳନପାଇଁ କେତେକ ସ୍ତ୍ରୀ ସହ ମୁହାଁମୁହିଁ ହେବା ପରେ ତାକୁ ଜାଲରେ ଛନ୍ଦିଦେବା ଗୁଣ ଆହୁରି ଏକ ବିଶେଷ ଗୁଣ । ଜଗତ୍‌ର ପ୍ରତ୍ୟେକ ପ୍ରାଣୀର କିଛି ନା କିଛି ବୈଶିଷ୍ଟ୍ୟ ପରିଲକ୍ଷିତ ହେବାପରି କଙ୍କଡ଼ା ବୁଢ଼ିଆଣୀର ଏପରି ସ୍ୱଭାବ ବିଚିତ୍ର । ବିଶେଷକରି ବୁଢ଼ିଆଣୀ ଜଗତରେ ଏହାଠାରେ ଦେଖାଯାଏ ଅନେକ ଭିନ୍ନତା । ବାସ୍ତବିକ ପୃଥିବୀର ପ୍ରାକୃତିକ ପରିବେଶମଧ୍ୟସ୍ଥ ସ୍ଥାବର ଜଙ୍ଗମ ମଧ୍ୟରେ ଚଳପ୍ରଚଳ ପ୍ରାଣିଜଗତ୍‌ର ଏପରି କ୍ଷୁଦ୍ରକାୟ ପ୍ରାଣୀଗୁଡ଼ିକର ଗତି, ରୀତି, ନୀତି ଓ ସ୍ଥିତି ଆଦି କେତେ ଅଦ୍ଭୁତ !

# ପାଣି ବୁଢ଼ିଆଣୀ

**ଏମିତି ବି ପ୍ରାଣୀଟିଏ !**

ଜୀବଜଗତ୍‌ଟି ଆମର ଜୀବମାନଙ୍କର ଏକ ଅସରନ୍ତି ଭଣ୍ଡାର । ଲକ୍ଷ୍ମୀଙ୍କ ଭଣ୍ଡାରରେ ଶସ୍ୟ ଭରି ରହିଥିବା ପରି ପୃଥିବୀ ପରି ଏକ ସୁନ୍ଦର ଗ୍ରହ ଉପରେ ପ୍ରାଣୀମାନଙ୍କର ସମାବେଶ ସତରେ ଅତି ମନୋରମ । ପ୍ରାଣୀ ଓ ଉଦ୍ଭିଦଗୁଡ଼ିକ ପୃଥିବୀର ଲକ୍ଷ୍ମୀ । ସେଥିପାଇଁ ପୃଥିବୀ ପରି ଗ୍ରହ ବୋଧହୁଏ ଆଉ କେଉଁ ଗ୍ରହଟି ନୁହେଁ । ପ୍ରାକୃତିକ ଶୋଭାରେ ପୂର୍ଣ୍ଣ ଏ ପୃଥିବୀର କୋଳରେ ପ୍ରାଣୀମାନେ ତାଙ୍କର ସ୍ଥାନ ଖୋଜି କିଏ କେଉଁଠି ରହିଯାଇଛନ୍ତି ତାହା ଭାବିଲେ ସତରେ କେମିତି କେମିତି ଲାଗେ । କିଏ ଗଛରେ, କିଏ ଗଛର କୋରଡ଼ରେ, କିଏ ମାଟି ଭିତରେ, କିଏ ପୋଖରୀରେ, କିଏ ମଧୁର ଜଳରେ, କିଏ ଲୁଣିମିଶା ମଧୁର ଜଳରେ, କିଏ ସମୁଦ୍ର ଗର୍ଭରେ, କିଏ ପଚାପାଣିରେ, କିଏ ଅଳିଆ ଆବର୍ଜନା ଆଦି ଅପରିଷ୍କାର ସ୍ଥାନରେ ତ କିଏ ପଥରଗୁମ୍ଫାରେ ଅଥବା ଆଉ କେଉଁମାନେ ସୁନ୍ଦର ସୁନ୍ଦର ଚାଳଘର ବା କୋଠାଘରଗୁଡ଼ିକରେ ରହିବାର ଦେଖାଯାଏ । ବାସ୍ତବିକ କିଏ ଏ ପ୍ରାଣୀମାନଙ୍କୁ ଶିଖାଇଲା ଏମିତି ରହିବାପାଇଁ ? ଏ ପ୍ରଶ୍ନଟି ଗୋଟିଏ ଅତି ଜଟିଳ ପ୍ରଶ୍ନ । ସରଳ ଉତ୍ତରଟି ଏହାର ଯେ ଯାହାକୁ ଯେପରି ସୁବିଧା ହେଲା, ସେ ସେପରି ସ୍ଥାନକୁ ବାଛିନେଇ ରହିବା ଅଭ୍ୟାସ କରିଛି ବୋଧହୁଏ । ବୁଢ଼ିଆଣୀଗୁଡ଼ିକ ଅଧିକାଂଶ ଗଛରେ ଦେଖାଯିବା ବେଳେ ଆଉ କେତେକ ମାଟିତଳେ ରୁହନ୍ତି ବୋଲି ପୂର୍ବରୁ ଆଲୋଚନା କରାଯାଇଛି । ତେବେ ଏମାନେ ସବୁ 'ସ୍ଥଳଭାଗର ବୁଢ଼ିଆଣୀ' । ଆଶ୍ଚର୍ଯ୍ୟର କଥା ହେଲା ବୁଢ଼ିଆଣୀମାନେ ଖାଲି ଯେ ସ୍ଥଳଭାଗରେ ଦେଖାଯାଆନ୍ତି ତାହା ନୁହେଁ; କେତେକ ବି ଦେଖାଯାଆନ୍ତି ଜଳଭାଗରେ ବା ପାଣିରେ । କଥାଟା ବିସ୍ମୟ ଲାଗିଲେ ବି ସତ । ଏମାନଙ୍କ ସଂଖ୍ୟା କିନ୍ତୁ ଖୁବ୍ କମ୍ । ପ୍ରାୟ ଗୋଟିଏ ପରିବାରର ବୁଢ଼ିଆଣୀ ଏମିତି ହିଁ ଜଳଭାଗରେ ଦେଖାଯାଆନ୍ତି । କିଏ ସେ ବୁଢ଼ିଆଣୀ, କେମିତି ରୁହନ୍ତି ଓ କିପରି ବସା ବାନ୍ଧନ୍ତି ଇତ୍ୟାଦି ଏବେ ଆଲୋଚନା କରିବା ।

**ନାମ, ବିସ୍ତୃତି ଓ ଶରୀର ଗଠନ**

ପାଣି ବା ଜଳରେ ଦେଖାଯାଉଥିବା ବୁଢ଼ିଆଣୀକୁ 'ପାଣି ବୁଢ଼ିଆଣୀ' ବା 'ଜଳ ବୁଢ଼ିଆଣୀ' (Aquatic Spider) ବୋଲି କୁହାଯାଏ । ସନ୍ଧିପଦ ପର୍ବର ଏ ବୁଢ଼ିଆଣୀ ଏକ ଭିନ୍ନ ପରିବାର (Family-Ageleni-dae)ର । ଏ ପ୍ରକାର ବୁଢ଼ିଆଣୀଙ୍କ ଶ୍ରେଣୀ (Class Arachnida) ଅଷ୍ଟପଦୀ ଓ ବର୍ଗ ହେଉଛି ଅରାନେଇଡ଼ା (Order-Araneida) । ସାଧାରଣ ଭାଷାରେ ଏହାକୁ ପାଣି ବୁଢ଼ିଆଣୀ କୁହାଗଲେ ବି ସମସ୍ତେ ବିଜ୍ଞାନ କ୍ଷେତ୍ରରେ ବୁଝିବାପାଇଁ ବୈଜ୍ଞାନିକ ଭାଷାରେ ଏହାର ନାମ ଅଲଗା *(Argyroneta aquatica)* । ଏସିଆ ଓ ୟୁରୋପ ମହାଦେଶର ଉଷ୍ଣମଣ୍ଡଳୀୟ ସ୍ଥାନ ଏମାନଙ୍କ ଘର । ମୋଟାମୋଟି ଭାବରେ କେତେକ ବୁଢ଼ିଆଣୀ ଜଳରେ ଖୁବ୍ ଅଳ୍ପ ସମୟପାଇଁ କାଟନ୍ତି ଓ ଆଉ କେତେକ ଆପେ ଆପେ ପାଣି ମଧ୍ୟକୁ ଚାଲିଯିବା ସ୍ଥଳେ ବାସ୍ତବରେ ଜଳ ବୁଢ଼ିଆଣୀ ହିଁ ସବୁବେଳେ ଜଳ ମଧ୍ୟରେ ଅବସ୍ଥାନ କରେ । ଏପରି ସଂପୂର୍ଣ୍ଣ ଭାବରେ ଜଳ ଭିତରେ ରହିବା ବୁଢ଼ିଆଣୀ ଏକମାତ୍ର ଗୋଟିଏ । ଜଳ ହିଁ ଏହାର ସ୍ଥାୟୀ ଘର । ସମୁଦାୟ ଜୀବନଟି ଏମାନେ ଅତିବାହିତ କରନ୍ତି ଜଳଗର୍ଭରେ ।

କିଛି ଏହା ଦେଖିବାକୁ ଅନ୍ୟ ବୁଢ଼ିଆଣୀମାନଙ୍କ ପରି । ଶରୀର ଗଠନରେ ସେପରି ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ ନାହିଁ । ଆକାରରେ ଛୋଟ । ଆକୃତିରେ ଏ ବୁଢ଼ିଆଣୀମାନଙ୍କଠାରେ ଏକ ବିଶେଷତ୍ୱ ଦେଖାଯାଏ । ଏହାର ସ୍ତ୍ରୀ ବୁଢ଼ିଆଣୀ



ଜଳ ମଧ୍ୟରେ ବଢ଼ିଥିବା ଉଦ୍ଭିଦ ଉପରେ ସ୍ତ୍ରୀ ଜଳ ବୁଢ଼ିଆଣୀ



ଜଳୀୟ ଉଦ୍ଭିଦ ମଧ୍ୟରେ ଜଳ ବୁଢ଼ିଆଣୀର ବସା

ପୁରୁଷମାନଙ୍କ ଅପେକ୍ଷା ଛୋଟ । ଅର୍ଥାତ୍ ଆକାରରେ ଅନ୍ୟସବୁ ବୁଢ଼ିଆଣୀମାନଙ୍କର ସ୍ତ୍ରୀର ଆକାର ବଡ଼ ହେବାବେଳେ ପୁରୁଷର ଆକାର ହୋଇଥାଏ ସାନ । ମାତ୍ର ଜଳ ବୁଢ଼ିଆଣୀରେ ଏହା ଠିକ୍ ଓଲଟା । ହାରାହାରି ଆକାର ଆଠରୁ ପନ୍ଦର ମିଲିମିଟର (୧.୫ ସେ.ମି) । ତଥାପି ସବୁଠାରୁ ବଡ଼ ସ୍ତ୍ରୀ ବୁଢ଼ିଆଣୀ ହିଁ ୨୮ ମିଲିମିଟର ଲମ୍ବର ବା ଏକ ଇଞ୍ଚରୁ ଅଧିକ ବୋଲି ମଧ୍ୟ ଜଣାଯାଇଛି । ଶରୀରଟି ଦୁଇଭାଗରେ ବିଭକ୍ତ । ଶିରୋବକ୍ଷ (Cephalothorax) ଓ ଉଦର (Abdomen) ଶିରୋବକ୍ଷଟି ପାଣିଚିଆ ଧୂସର ବର୍ଣ୍ଣ ଓ ମୁଣ୍ଡର ପାର୍ଶ୍ୱ ଅଂଶ କାଳିଆ ବର୍ଣ୍ଣ । ଦଂଶକ ବା ବିଷଦାନ୍ତ (Chelicerae ବା Fang) ଲାଲ୍ ଧୂସର ଓ ମୁନିଆ । ପେଟଟିର ଆକାର ଗୋଲାକାର ନ ହୋଇ ଟିକିଏ ଲମ୍ବାଳିଆ – ଦେଖିବାକୁ ଠିକ୍ କଲିକତୀ ବାଦାମ ପରି । ପେଟର ବର୍ଣ୍ଣ ପାଉଁଶିଆ । ପେଟସାରା ଛୋଟ ଆଂଶୁ ବା କେଶରେ ପୂର୍ଣ୍ଣ । ଆଠଟି ଗୋଡ଼ ଖୁବ୍ ସରୁ ଓ ଲମ୍ବା । ଗୋଡ଼ଗୁଡ଼ିକ ଅଳ୍ପ ଆଂଶୁଯୁକ୍ତ ଓ ଅଗ୍ରଭାଗ ମୁନିଆ ।

## ପାଣି ବୁଢ଼ିଆଣୀର ଘର

ରହିବାପାଇଁ ଯେମିତି ହେଲେ ସ୍ଥାନଟିଏ ପ୍ରତ୍ୟେକ ପ୍ରାଣୀର ଆବଶ୍ୟକ ହୋଇଥାଏ । କିଏ କେମିତି ମୁଣ୍ଡ ଗୁଞ୍ଜି ରହିଲେ ବି ଜଳ ବୁଢ଼ିଆଣୀ ରହିଥାଏ ଜଳରେ । ପୁଣି ଜଳ ଉପରେ ନ ରହି ରହିଥାଏ ଜଳ ଭିତରେ । ପର୍ତ୍ତୁଗୀଜ ସୈନ୍ୟମାନେ ଶିକାର କୌଶଳରେ ଧୁରନ୍ଧର ପରି ବା ନିଜକୁ ଲୁଚାଇ ରଖିବାରେ କୌଶଳୀ ପରି ଏ ଜଳ ବୁଢ଼ିଆଣୀ ଜଳ ମଧ୍ୟରେ ଅତି ନିରାପଦରେ ରହିଥାଏ । ବୁଢ଼ିଆଣୀମାନଙ୍କ ମଧ୍ୟରେ ଯେତେ ପ୍ରକାର ବୁଢ଼ିଆଣୀ ଅଛନ୍ତି, ସବୁଠାରୁ ଗୁପ୍ତରେ ରହିବା ଓ ନିରାପଦରେ ଅବସ୍ଥାନ କରିବାର ଉତ୍କୃଷ୍ଟ ଉପାୟ ହିଁ ଏହା ପାଖରେ ଦେଖାଯାଏ ।



ଜଳ ବୁଢ଼ିଆଣୀ ଏକ କୀଟକୁ ଏହାର ବାୟୁ ଫୋଟକା ମଧ୍ୟକୁ ସଂଗ୍ରହ

ଜଳ ମଧ୍ୟରେ ସଂପୂର୍ଣ୍ଣ ଭାବରେ ଏ ରହିଲେ ମଧ୍ୟ ପ୍ରଶ୍ୱାସପାଇଁ ଆବଶ୍ୟକ ହୋଇଥାଏ ପବନ । କାରଣ ପବନ ବିନା ଜୀବନ ଅସମ୍ଭବ । ଏ ବୁଢ଼ିଆଣୀ ଜଳ ମଧ୍ୟରେ ଘଣ୍ଟି ପରି ଏକ ରେଶମ କୋଷା (Diving Bell) ତିଆରି କରି ସେଠାରେ ରୁହେ । ପ୍ରଶ୍ୱାସପାଇଁ ପବନ ଦରକାର ହେଲେ ଜଳ ମଧ୍ୟରୁ ଉପରକୁ ଉଠିଆସି ଜଳ ସ୍ତରର ଉପରିଭାଗରେ ପେଟ ସହିତ ମୁଣ୍ଡକୁ ତଳକୁ କରି ରଖେ; ମାତ୍ର ପେଟର ପୂରା ପଛଭାଗଟି ଜଳସ୍ତର ଉପରକୁ ଟେକି ହୋଇ ରହିଥାଏ । ତା' ପରେ ହଠାତ୍ ନିଜର ପେଟ ଓ ପଛଗୋଡ଼ ଦୁଇଟିକୁ ହଲାଇ ଦେଇ ଗୋଟିଏ ପାଣି ଫୋଟକା (Bubble of Air) ପେଟତଳେ ଧରି ଆଣେ । ପଛ ଗୋଡ଼ ଦୁଇଟିରେ ପାଣି ଫୋଟକାଟିକୁ ଧରି ପାଣି ମଧ୍ୟକୁ ଚାଲି ଆସି ନିଜେ ତିଆରି କରିଥିବା ରେଶମୀ କୋଷା ମଧ୍ୟକୁ ବା ପାଣିରେ ଥିବା ଗଛ ଡାଳ ଇତ୍ୟାଦିକୁ ଚାଲିଆସେ । ତେବେ ତା'ର ଜାଲ ବା କୋଷାଟି ସଂପୂର୍ଣ୍ଣ ଭାବରେ ପବନରେ ପୂର୍ଣ୍ଣହେବା ପର୍ଯ୍ୟନ୍ତ ବୁଢ଼ିଆଣୀଟି ଥରକୁ ଥର ଜଳ ଉପରିଭାଗକୁ ଆସେ ଓ ପାଣିଫୋଟକା ବୋହିନେଇ ତା' କୋଷାକୁ ପୂର୍ଣ୍ଣ କରିବାରେ ଲାଗିଥାଏ । ପବନରେ ପୂର୍ଣ୍ଣ ହୋଇଗଲେ ସେ ପବନ ସରିଯିବା ପର୍ଯ୍ୟନ୍ତ ସେଠାରେ ରୁହେ ଓ ପୁନର୍ବାର ପବନ ସଂଗ୍ରହ କରିବାରେ

ଲାଗିପଡ଼େ । ବର୍ତ୍ତମାନ ଦେଖିବା ରେଶମୀ କୋଷାଟି କେମିତି ?

**ଘଣ୍ଟିପରି ରେଶମୀ କୋଷା**

ଜାଲ (Web) ହିଁ ଅଧିକାଂଶ ବୁଢ଼ିଆଣୀଙ୍କ ଘର । ଜାଲ ବୁଣିବା ପ୍ରାୟ ସେମାନଙ୍କ ଅଭ୍ୟାସ । ଜାଲ ଉଭୟ ରହିବା ଓ ଶିକାର କରିବା କାମରେ ଲାଗିଥାଏ । ତେବେ ଜଳ ବୁଢ଼ିଆଣୀର ଜାଲ ଘଣ୍ଟିପରି ବା ଦରଜିମାନେ ଅଙ୍ଗୁଳିରେ ବ୍ୟବହାର କରୁଥିବା ଅଙ୍ଗୁଳି ଦସ୍ତାନା (Thimble) ପରି । ପାଣି ମଧ୍ୟରେ ଗଛର ଡାଳ ବା ପତ୍ରଗୁଡ଼ିକରେ ପ୍ରଥମେ ବୁଢ଼ିଆଣୀ ତା' ପେଟରୁ ରେଶମ ନିର୍ଗତ କରି ମଞ୍ଚ ପରି ଆକାର ତିଆରି କରେ । ଅର୍ଥାତ୍ ଗଛର ଡାଳ ବା ପତ୍ରରେ ଅଡୁଆ ଭାବରେ ଜାଲଟି ହୋଇଥାଏ । ଜାଲ ପ୍ରସ୍ତୁତି ପରେ ବୁଢ଼ିଆଣୀ ସେ ଜାଲ ପାଖରୁ ଯେଉଁ ଆଡ଼କୁ ଯିବାକୁ ଚାହିଁଲେ ସେ ସ୍ଥାନକୁ ଯିବାପାଇଁ ଗୋଟିଏ ସୂତା ଖିଅ ତା' ଘଣ୍ଟିପରି ଆକାର (Thimble-shaped Bell) ଘର ପାଖରୁ ବାହାର କରି ନିଜ ସହିତ ନେଇଥାଏ । ରଥରେ ଦଉଡ଼ି ଲଗାଇ ରଥ ଟାଣିବା ପରି ଏ ବୁଢ଼ିଆଣୀ ସୂତାଖିଅଟିକୁ ନିଜ ଘର ସହିତ ଲଗାଇ ନିଜେ ସୂତା ସହ ଏଣେତେଣେ ଯିବାଆସିବା କରେ । ଅର୍ଥାତ୍ ଏ ସୂତାଟି ଗୋଟିଏ ପଥ ପ୍ରଦର୍ଶକ (Guide line of silk) ଭାବରେ କାର୍ଯ୍ୟ କରେ । ତେଣୁ ଯେଉଁଆଡ଼େ ଗଲେ ମଧ୍ୟ ସେ ତା'ର ନିଜ ସ୍ଥାନ ବା ରେଶମୀ ଘରକୁ ସହଜରେ ଆସିପାରେ । ସୁତରାଂ ନିଜ ଘରକୁ ଭୁଲିଯିବା ସମ୍ଭବ ହୁଏ ନାହିଁ । ରେଶମ ନିର୍ଗତ ପରି ମଞ୍ଚ ତିଆରି କରିବା ପରେ ବୁଢ଼ିଆଣୀ ରେଶମ ମଞ୍ଚ ନିମ୍ନଭାଗରେ ପବନ ଛାଡ଼ିବାକୁ ଆରମ୍ଭ କରେ । ତେଣୁ ରେଶମ ମେଞ୍ଚା ଫୁଲିଯାଇ ବେଲୁନ୍ ପରି ହୋଇଯାଏ । ଅର୍ଥାତ୍ ସାଧାରଣ ବେଲୁନ୍‌ଟି ଆଣି ପାଟିରେ ଫୁଙ୍କି ପବନ ପୂରାଇଲେ ତାହା ଫୁଲି ଯାଇ ଯେପରି ହାଲୁକା ହୋଇଯାଏ, ଏ ରେଶମୀ ମେଞ୍ଚାର ଅବସ୍ଥା ଠିକ୍ ସେହିପରି ହୋଇଯାଏ । ତେଣୁ ବୁଢ଼ିଆଣୀ ଥରକୁ ଥର ପାଣି ଉପରକୁ ଆସି ପବନ ନେଇ ଏ ରେଶମ ଘର ମଧ୍ୟକୁ ପୂରାଇ ଦେବାରୁ ତାହା ଫୁଲି ଘଣ୍ଟି (Bell) ପରି ବା ଅଙ୍ଗୁଳି ଦସ୍ତାନା (Thimble) ପରି ହୋଇଯାଏ । ଏହି ଆକାର ହେତୁ ଜଳ ବୁଢ଼ିଆଣୀର ଘରକୁ 'ଅଙ୍ଗୁଳି ଦସ୍ତାନା ପରି ଘଣ୍ଟି ରେଶମୀ ଘର' ବୋଲି କୁହାଯାଏ । ସତରେ ବଡ଼ ଆଶ୍ଚର୍ଯ୍ୟ ଲାଗେ ଯେ ପାଣି ମଧ୍ୟରେ ଘର ତିଆରି କରି ସାମାନ୍ୟ ହାଲୁକା ରେଶମ ଘରେ ପାଣି ଆଦୌ ପଶିଯାଏ ନାହିଁ । କିଏ ସେ ବୁଦ୍ଧି ବା କୌଶଳ ଶିଖାଇଲା ବଡ଼ ବିସ୍ମୟର କଥା । ଆଜିକାଲିର ଯନ୍ତ୍ରୀ ବା ଇଂଜିନିୟରମାନେ ତାଙ୍କର ଅନେକ ବୁଦ୍ଧି ପ୍ରୟୋଗ କରି ଘରଦ୍ୱାର ଓ ବନ୍ଧବାଡ଼ ତିଆରି କଲେ ବି ତାହା ବେଳେ ବେଳେ ଭାଙ୍ଗିଯାଏ । କିନ୍ତୁ ଜଳ ମଧ୍ୟରେ ଏହାର ଘର ତିଆରି ହୋଇ ମଧ୍ୟ ଘରର କିଛି ଅସୁବିଧା ହୁଏ ନାହିଁ । ନିରାପଦରେ ଥାଏ । ଖାଲି ଥରକୁ ଥର ଆସି ତା'ର ସେ ଘରେ ପବନ ପୂର୍ଣ୍ଣ କରିବାରେ ଲାଗିଥାଏ । ମଣିଷ ବା ପିଲାମାନେ ବେଳେ ବେଳେ ତାଙ୍କ ଘରକୁ ନ ପାଇବା ବେଳେ ଏ ବୁଢ଼ିଆଣୀ ହଜି ନ ଯିବାପାଇଁ ସୂତାଖିଅଟିରେ ନିଜକୁ ମଧ୍ୟ ବାନ୍ଧି ରଖିଥାଏ ।

**ପାଣି ବୁଢ଼ିଆଣୀର ଗୁପ୍ତ ଅବସ୍ଥାନ ଓ ଶିକାର**

ପ୍ରକୃତି ମଧ୍ୟରେ ଥିବା ସମସ୍ତ ପ୍ରାଣୀଙ୍କର କିଛି ନା କିଛି ଶତ୍ରୁ ଥାଆନ୍ତି । ଶତ୍ରୁ ମୁହଁରୁ ନିଜକୁ ବଞ୍ଚାଇବାପାଇଁ ପ୍ରାଣୀମାନେ କିଛି ଉପାୟ ଅବଲମ୍ବନ କରିବାର ଦେଖାଯାଏ । ଦିନବେଳେ ଏ ବୁଢ଼ିଆଣୀ ପୂରାପୂରି ନିଜେ ତିଆରି କରିଥିବା ଘଣ୍ଟି ମଧ୍ୟରେ ରୁହେ । ଘର ମଧ୍ୟରେ ଥିବା ସମୟରେ ତା'ର ଆଗଗୋଡ଼ ଦୁଇଟିକୁ ମୁଣ୍ଡ ପାଖରୁ ଆଗକୁ ଲମ୍ବାଇ ଦେଇ ପାଣିକୁ ଛୁଇଁ ରଖିଥାଏ । କୌଣସି ଛୋଟ ପ୍ରାଣୀ, ପୋକ ବା ଲାର୍ଭା ତା' ଘରର ପାଖାପାଖି ଆସିଗଲେ ବା ଆଭାସ ପାଇଲେ ବୁଢ଼ିଆଣୀଟି ତତ୍‌କ୍ଷଣାତ୍ ଚାଲିଆସି ଶିକାରକୁ ଧରିନିଏ । ତା'ପରେ ଧୀରେ ସେ ଚାଲିଯାଏ ତା'ର ନିଭୃତ ସ୍ଥାନ

ଘଣ୍ଟି ମଧ୍ୟକୁ । ପାଣି ଉପରେ କୌଣସି କୀଟପତଙ୍ଗ ହଠାତ୍ ପଡ଼ିଗଲେ ସେ ପାଣି ହଲିବାର ତରଙ୍ଗରୁ ଜାଣିପାରେ । ତେଣୁ ସତର୍କ ହୋଇଯାଇ ଖପ୍‌କରି ମାଡ଼ିବସିବାପାଇଁ ତତ୍ପର ହୋଇଉଠେ । ସେଥିପାଇଁ ସେ ଘଣ୍ଟି ମଧ୍ୟରେ ଥିବାବେଳେ ଗୋଡ଼ ଦୁଇଟିକୁ ପାଣିରେ ସ୍ପର୍ଶ କରି ରଖିଥାଏ । ଶିକାରକୁ ତା'ର ଘରକୁ ନେଇଯାଇ ମାରିଦିଏ । ଶିକାର ଅବଶ ହୋଇଯିବା ପରେ ତା' ଶରୀରର ରସକୁ ଅନ୍ୟ ବୁଢ଼ିଆଣୀମାନଙ୍କ ପରି ଶୋଷି ଖାଇଥାଏ । ତେଣୁ ଶିକାର ପାଇଁ ଏହାକୁ ପରିଶ୍ରମ କରିବାକୁ ପଡ଼େ ନାହିଁ । ଗୋଟିଏ ନିରାପଦ ସ୍ଥାନରେ ରହି ଶିକାର ପାଇବା ଏହାପାଇଁ ହୋଇଥାଏ ସହଜ । ଆଉ ଘର ବା ଘଣ୍ଟିଟି ତା'ପାଇଁ ଗୋଟିଏ ଗୁପ୍ତସ୍ଥାନ (Ambush) । ଦିନବେଳେ ସେ ତାହାର ଗୁପ୍ତସ୍ଥାନଟିକୁ ବ୍ୟବହାର କରି ଶିକାର କରିବା ବେଳେ ରାତିରେ ସେ ତା' ଘଣ୍ଟି ମଧ୍ୟରେ ସବୁବେଳେ ରହି ନ ଥାଏ । ରାତିରେ ସେ ବାସ୍ତବରେ ଶିକାର କାର୍ଯ୍ୟରେ ବାହାରି ପଡ଼େ । ଘଣ୍ଟି ମଧ୍ୟରୁ ବାହାରିଯାଇ ଶିକାର ଅନ୍ୱେଷଣରେ ଲାଗେ ଓ ଶିକାର ପାଇବା କ୍ଷଣି ପୁଣି ତା' ଘଣ୍ଟି ମଧ୍ୟକୁ ଶିକାର ସହ ଚାଲିଆସେ । ଯାହାହେଉନା କାହିଁକି ଖାଇବା କାର୍ଯ୍ୟ ସେ କରିଥାଏ କେବଳ ଘଣ୍ଟି ମଧ୍ୟରେ ।

## ପାଣି ବୁଢ଼ିଆଣୀର ଅଣ୍ଡା ଓ ଛୁଆ

ପାଣି ବୁଢ଼ିଆଣୀମାନଙ୍କର ମିଳନ ସମୟ ହେଉଛି ବସନ୍ତଋତୁ ବା ଗ୍ରୀଷ୍ମଋତୁର ଆରମ୍ଭ । ମିଳନ ସମୟ ଆସିଲେ ପୁରୁଷଟି ନିଜ ଶରୀରରୁ ଶୁକ୍ରରସ (Seminal Fluid)କୁ ସ୍ପର୍ଶପାଦ (Pedipalp) ସାହାଯ୍ୟରେ ଧରି ସ୍ତ୍ରୀ ଅନ୍ୱେଷଣରେ ବୁଲିଥାଏ । ସ୍ତ୍ରୀଟିକୁ ପାଇଗଲେ ଓ ସ୍ତ୍ରୀ ଏକମତ ହେଲେ ମିଳନ ଘଟିଥାଏ; ନଚେତ୍ ସ୍ତ୍ରୀ ହିଁ ପୁରୁଷକୁ ଡରାଇ ଅପସରିଯିବାପାଇଁ ବ୍ୟବସ୍ଥା କରିଥାଏ । ତେବେ ମିଳନ ହିଁ ଘଣ୍ଟି ମଧ୍ୟରେ ସମାହିତ ହୋଇଥାଏ । ଏମାନଙ୍କ ମିଳନ ଖୁବ୍ ସମୟ ଲାଗିଥାଏ । ମିଳନ ପରେ ପୁରୁଷଟି କିଛି ସମୟ ସ୍ତ୍ରୀ ଘଣ୍ଟି ମଧ୍ୟରେ ଅବସ୍ଥାନ କଲାପରେ ଦ୍ୱିତୀୟ ଥର ମିଳନ ହୋଇଥାଏ ବା ସମ୍ଭବ ନ ହେଲେ ପୁରୁଷଟି ସେଠାରୁ ପଳାଇଆସେ । ତା' ପରେ ସ୍ତ୍ରୀ ଅଣ୍ଡାଦେବାକୁ ଆରମ୍ଭ କରେ । ଥରକରେ ଅଣ୍ଡାଦିଏ ୫୦ରୁ ୧୦୦ଟି । ଅଣ୍ଡାଗୁଡ଼ିକ ଗୋଟିଏ ରେଶମୀ ଥଳୀ (Silken Bag)ରେ ଜମା ହୋଇ ଘଣ୍ଟିର ଉପର ସ୍ଥାନରେ ରହିଥାଏ । ତିନିରୁ ଚାରିସପ୍ତାହ ମଧ୍ୟରେ ଅଣ୍ଡାଗୁଡ଼ିକ ଫୁଟି ଛୁଆ ବାହାରିଯାଆନ୍ତି । ଛୁଆଗୁଡ଼ିକ ରେଶମୀ କୋଷା ମଧ୍ୟରୁ ବାହାରିଯାଇ ଘଣ୍ଟି ମଧ୍ୟକୁ ଚାଲିଆସନ୍ତି । ସେଠାରେ ରୁହନ୍ତି ପ୍ରାୟ କିଛି ସପ୍ତାହ । ରହିବା ବେଳେ ତାଙ୍କ ଦେହରୁ ଚୋପା ଛାଡ଼ିଥାଏ (Moulting) ଦୁଇଥର । ମାଆ ରହିଥିବା ଜଳଭାଗରେ କିଛି ଛୁଆ ରହିବା ବେଳେ ଆଉ କିଛି ଅନ୍ୟ ଜଳଭାଗକୁ ସ୍ଥାନାନ୍ତରିତ ହୋଇଥାଆନ୍ତି । ପାଣିରେ ଭାସି ଭାସି ଅନ୍ୟ ପୋଖରୀ ବା ଗାଡ଼ିଆକୁ କେତେକ ଯିବାବେଳେ ଆଉ କେତେକ ପବନରେ ଅନ୍ୟ ଜଳଭାଗକୁ ଚାଲିଯାଇଥାଆନ୍ତି । ଯିବାବେଳେ ଅନେକ ମରିଯାଆନ୍ତି ମଧ୍ୟ ।

## ପାଣି ବୁଢ଼ିଆଣୀର ଶତ୍ରୁ

ଛୁଆ ବୁଢ଼ିଆଣୀଗୁଡ଼ିକ ବିକ୍ଷିପ୍ତ ହେବା ସମୟରେ ଅନେକ ମରିଯାଆନ୍ତି । ତଥାପି ସାଧାରଣ ଜୀବନ ଚକ୍ର ଅବସ୍ଥାରେ ଶତ୍ରୁ ମୁହଁରୁ ଏମାନେ ବାଦ ପଡ଼ନ୍ତି ନାହିଁ ଏତେ ନିରାପଦ ଘଣ୍ଟି ମଧ୍ୟରେ ଥାଇ । କଙ୍କିମାନଙ୍କର ଲାର୍ଭା, ଜଳୀୟ କାଠିପୋକ (Water Stick-insect), ଟାଣଖୋଳପା କୀଟ (Beetle) ଓ ସେମାନଙ୍କ ଲାର୍ଭା, ବେଙ୍ଗ, ମାଛ ଓ ସେମାନଙ୍କ ନିଜ ଜାତିର ବଡ଼ ବଡ଼ ବୁଢ଼ିଆଣୀ ଆଦି ଏମାନଙ୍କ ମୁଖ୍ୟ ଶତ୍ରୁ । ତେବେ ଜଳଚର ପ୍ରାଣୀମାନେ ହିଁ ଜଳ ବୁଢ଼ିଆଣୀର ଶତ୍ରୁ । ଶୀତ ଆସିଗଲେ ଏମାନେ ପୋଖରୀର ନିମ୍ନଭାଗକୁ ଚାଲିଯାଇ ସେଠାରେ ଏକ 'ଶୀତଦିନିଆ ଘଣ୍ଟି' (Winter Bell) ତିଆରି କରନ୍ତି । ଘରଟିକୁ ତିଆରି କରିସାରି ସେଥିରେ ପୂର୍ବପରି ପବନ ପୂରାଇଥାଆନ୍ତି । ଆଉ କେତେକ ଶାମୁକାମାନଙ୍କର

ମଲା ଖୋଳପା (Shell) ମଧ୍ୟରେ ଘଣ୍ଟି ତିଆରି କରନ୍ତି । ଅବଶ୍ୟ ପୋଖରୀ ନିମ୍ନଭାଗରେ ପଡ଼ିଥିବା ଶାମୁକା ଖୋଳକୁ ବ୍ୟବହାର କରିବାର ଦେଖାଯାଏ । ମଜା କଥା ହେଲା ଯେ ଘଣ୍ଟି ମଧ୍ୟରେ ପୂର୍ଣ୍ଣ ହେଉଥିବା ପାଣି ବା ପବନ ଫୋଟକା ଗୋଟିଏ ଏହି ସମୟରେ ସରିବାକୁ ଲାଗିଥାଏ ଅନେକ ସମୟ । ଅର୍ଥାତ୍ ଚାରିରୁ ପାଞ୍ଚ ମାସ ସମୟ । କାରଣ ଏ ସମୟରେ ବୁଢ଼ିଆଣୀ ଯିବାଆସିବା କରି ନ ଥାଏ ଓ ଶକ୍ତି ମଧ ଦରକାର ହୋଇ ନ ଥାଏ ପ୍ରାୟ । ବେଙ୍ଗମାନେ ଶୀତଦିନେ ଶୀତନିଦ୍ରା ଯିବାପରି ବୋଧହୁଏ ଏମାନେ ଚୁପ୍‌ଚାପ୍ ହୋଇ ପାଣିତଳେ ରହିଯାଆନ୍ତି ।

**ପାଣି ବୁଢ଼ିଆଣୀ – ବୁଢ଼ିଆଣୀଜଗତ୍‌ର ଏକ ଆକର୍ଷଣ**

ଅନେକ ମାଙ୍କଡ଼ସା ଅର୍ଥାତ୍ ବୁଢ଼ିଆଣୀ ସଂପର୍କରେ ଆଲୋଚନା କଲା ପରେ ପ୍ରତ୍ୟେକଙ୍କ ଆକୃତି, ପ୍ରକୃତି ଓ ବ୍ୟବହାରରେ କିଛି ନା କିଛି ବୈଶିଷ୍ଟ୍ୟ ପରିଲକ୍ଷିତ ହେବାର ଦେଖାଯାଏ । ଯାହା ହେଲେ ବି ପାଣି ବୁଢ଼ିଆଣୀର ବୈଶିଷ୍ଟ୍ୟ ସମସ୍ତଙ୍କଠାରୁ ଅଧିକ । ଏତେ ଛୋଟ ଜୀବଟିଏ ହୋଇ ପାଣି ମଧ୍ୟରେ ଘର କରି ସେଠାରେ ରହିବା, ଶିକାର କରିବା ଓ ଏପରିକି ଘଣ୍ଟିପରି ଘର ମଧ୍ୟରେ ପ୍ରଜନନ ହିଁ ଏହାର ବିଶେଷତ୍ୱ । ସବୁଠାରୁ ଆକର୍ଷଣୀୟ ଘଟଣା ହେଉଛି ଯେ ପବନକୁ ନିଜ ଦେହରେ କୌଶଳରେ ସଂଗ୍ରହ କରି ଅଙ୍ଗୁଳି ଦସ୍ତାନା ଆକାରର ଘଣ୍ଟି ମଧ୍ୟରେ ଜମାକରିବା । ମନୁଷ୍ୟ ଭବିଷ୍ୟତ ପାଇଁ ପଇସା ସଞ୍ଚୟ କରିବା ପରି ଏ ପ୍ରାଣୀ ପ୍ରକୃତିରୁ ବାୟୁ ସଂଗ୍ରହ କରି ଜମାକରିବା ସତରେ ବଡ଼ କମ୍ କଥା ନୁହେଁ ।

ଜୀବ ସୃଷ୍ଟିର ପ୍ରାକ୍ କାଳରୁ ଧରାପୃଷ୍ଠରେ ପ୍ରକୃତି କେତେବେଳେ ଶାନ୍ତ, ସୁନ୍ଦର ଓ ଅପରୂପ ଶୋଭାରେ ପରିପୂର୍ଣ୍ଣ ତ କେତେବେଳେ ଭୀମ ଭୟଙ୍କର । ସୌନ୍ଦର୍ଯ୍ୟମୟ ପ୍ରକୃତିର ଏହି ରୂପ ଓ ପରିଚୟ ପାଇ ମଣିଷ ତା'ର ବିଭିନ୍ନ ଉପାଦାନ ଅର୍ଥାତ୍ ସୂର୍ଯ୍ୟ, ଚନ୍ଦ୍ର, ଇନ୍ଦ୍ର ଓ ବରୁଣ ପ୍ରଭୃତିଙ୍କୁ ଦେବତା ରୂପେ ସମ୍ବୋଧନ କରି ପୂଜା କରିଆସିଛି । ସେପରି ପୂଜା କରିଛି ମଧ କେତେକ ଜୀବମାନଙ୍କୁ । ଗାଈ, ସାପ, ପେଚା ଓ ମୟୂର ଆଦି ପ୍ରାଣୀ ବିଭିନ୍ନ ଦେବଦେବୀଙ୍କ ବାହନରୂପେ ଅଧିଷ୍ଠିତ ଥିବାରୁ ସେମାନେ ଆଜି ବି ପୂଜିତ । ଅବଶ୍ୟ ମନୁଷ୍ୟ ଯାହାଠାରୁ ଉପକାର ପାଇ ଆସୁଥିଲା ତାଙ୍କୁ ହିଁ ପୂଜା କରିବା ଥିଲା ତା'ର ଅଭ୍ୟାସ । ତେବେ ଏ ସୂକ୍ଷାତିସୂକ୍ଷ୍ମ ବୁଢ଼ିଆଣୀମାନେ ତା' ନଜରକୁ ଆସି ନ ଥିଲା ବା ସେପରି କିଛି ଆଖିଦୃଶିଆ ଉପକାର ଉପଲବ୍ଧି କରିପାରି ନ ଥିବାରୁ ଧ୍ୟାନ ଦେଇ ନ ଥିଲା । ପୁଣି କଦାକାର ରୂପ ହିଁ ତାକୁ ଘୃଣ୍ୟ ଜୀବରୂପେ ପରିଗଣିତ କରିଥିଲା । ଯାହାହେଉ ଏ ଘୃଣ୍ୟଜୀବମାନେ ପ୍ରକୃତି କ୍ରୋଡ଼ରେ ଲୁଚିରହି ଅନ୍ୟ ଅନିଷ୍ଟକାରୀ ପ୍ରାଣୀମାନଙ୍କୁ ଦମନ କରି ଆମପାଇଁ ଲାଗିପଡ଼ିଛନ୍ତି ସାହାଯ୍ୟ କରିବାପାଇଁ । ସେମାନେ ଆମକୁ ବା ଆମ ବୈଜ୍ଞାନିକମାନଙ୍କୁ ଶିଖାଇଛନ୍ତି ଯେ କିପରି କୌଶଳ ସବୁ ପ୍ରୟୋଗ କରିହେବ । କୌଶଳ ତିଆରି କରିହେବ ଓ ନିଜକୁ ଶତ୍ରୁ ମୁହଁରୁ ବଞ୍ଚାଇ ହେବ । ସତରେ ଛୋଟିଆ ପ୍ରାଣୀ ହେଲେ ବି ଏମାନଙ୍କ ବୁଦ୍ଧି ଓ କୌଶଳ ଖୁବ୍ ଉଚ୍ଚଧରଣର । ଏମାନେ ମରିଗଲେ ପ୍ରକୃତିର ପ୍ରାକୃତିକ ମନୋରମ ପରିବେଶ ଚନ୍ଦ୍ରମଣ୍ଡଳର କଳାଚିହ୍ନ ସଦୃଶ ଚିରଦିନପାଇଁ ରହିଯିବ ।

# ମାରାତ୍ମକ ବୁଢ଼ିଆଣୀ ଟାରାଣ୍ଟୁଲା

## ଏକ ବିଚିତ୍ର ଅଷ୍ଟପଦୀ

ପୃଥିବୀରେ ଅନ୍ତତଃ ପଚାଶ ହଜାର କିସମର ବୁଢ଼ିଆଣୀ ଥିବାର ଜଣାଯାଏ । ଆକାରରେ କ୍ଷୁଦ୍ର ହେଲେ ହେଁ ସେମାନେ ପ୍ରାୟ ୨୦ ବର୍ଷ ପର୍ଯ୍ୟନ୍ତ ବଞ୍ଚି ପାରନ୍ତି । ବଡ଼ ଆଶ୍ଚର୍ଯ୍ୟର କଥା ହେଉଛି ସେମାନେ ପୃଥିବୀର ସବୁପ୍ରକାର ସ୍ଥାନରେ ଓ ଆଣ୍ଟାର୍କଟିକା ମହାଦେଶ ବ୍ୟତୀତ ସବୁ ମହାଦେଶରେ ଦେଖିବାକୁ ମିଳନ୍ତି । ଅବଶ୍ୟ ଭିନ୍ନ ଭିନ୍ନ ସ୍ଥାନରେ ସେମାନଙ୍କର ଭିନ୍ନତା ଦେଖାଯାଏ । ଗୋଟିଏ ଘାସ ଜମି ଦେଖିଲେ ସେଠାରେ ହାରାହାରି ଏକ ବର୍ଗ ୟାର୍ଡ଼ (Square yard) ପରିମିତ ସ୍ଥାନରେ ପାଞ୍ଚଶହରୁ ଅଧିକ ବୁଢ଼ିଆଣୀ ଥାଇପାରନ୍ତି । ଅନେକ ସାଧାରଣ ବୁଢ଼ିଆଣୀ ବ୍ୟତୀତ ଆଉ କେତେକ ବିଚିତ୍ର ଆକାରର ଓ ଅଦ୍ଭୁତ ନାମଧାରୀ ବୁଢ଼ିଆଣୀମାନେ ହେଉଛନ୍ତି ଆଭା ବୁଢ଼ିଆଣୀ (Ray Spider), ମରକତ ମଣି ବୁଢ଼ିଆଣୀ (Emerald Spider), ସ୍ୱର୍ଣ୍ଣ ରେଶମ ବୁଢ଼ିଆଣୀ (Golden Silk Spider), ଛେପ ବୁଢ଼ିଆଣୀ (Spitting Spider), ସବୁଜ ବଣଭୁଆ ବୁଢ଼ିଆଣୀ (Green Lynx Spider), ପଶ୍ଚ କଣ୍ଟକିତ ବୁଢ଼ିଆଣୀ (Spiny-backed Spider), ମନୁଷ୍ୟ ଶିକାରୀ ବୁଢ଼ିଆଣୀ (Huntsman Spider), ପିମ୍ପୁଡ଼ି ପରି ଦେଖାଯାଉଥିବା ବୁଢ଼ିଆଣୀ (Ant-mimic Spider), ସରୁ କଟା ଯନ୍ତାଦ୍ୱାର ବୁଢ଼ିଆଣୀ (Truncated Trapdoor Spider), ଧାତ୍ରୀ ଜାଲ ବୁଢ଼ିଆଣୀ (Nursery Web Spider), କ୍ଷେପଣୀୟ ବୁଢ଼ିଆଣୀ (Bolas Spider), ଜଳଦସ୍ୟୁ ବୁଢ଼ିଆଣୀ (Pirate Spider) ଇତ୍ୟାଦି ଇତ୍ୟାଦି ଅନେକ । ଏସବୁ ବିଚିତ୍ର ବୁଢ଼ିଆଣୀମାନଙ୍କ ମଧ୍ୟରେ ଟାରାଣ୍ଟୁଲା ସବୁଠାରୁ ଅନ୍ୟତମ ।

## ନାମକରଣର ବୈଶିଷ୍ଟ୍ୟ

ଟାରାଣ୍ଟୁଲା (Tarantula) ନାଆଁଟି ବିଚିତ୍ର ଲାଗିଲେ ବି ଏହା ନାଆଁରେ କେତେକ କିମ୍ବଦନ୍ତୀ ଶୁଣାଯାଏ । ଦକ୍ଷିଣ ଇଟାଲୀରେ ବସବାସ କରୁଥିବା ଓ ଗଧିଆ ବୁଢ଼ିଆଣୀ ପରିବାରର ଅନ୍ତର୍ଭୁକ୍ତ ଥିବା ଏ ବୁଢ଼ିଆଣୀକୁ ପ୍ରଥମେ ଏକ କ୍ଷୁଦ୍ର ବୁଢ଼ିଆଣୀ ଭାବରେ ଧାରଣା କରାଯାଇଥିଲା । ତେବେ ଟାରାଣ୍ଟୁଲା ଶବ୍ଦଟି ଦକ୍ଷିଣ ଇଟାଲୀରେ ଅବସ୍ଥିତ ଟରଣ୍ଟୋ (Taranto) ନାମକ ସହରରୁ ଆସିଛି । ସେହି ସହରରୁ ଗୋଟିଏ କିମ୍ବଦନ୍ତୀ ବା ଉପାଖ୍ୟାନ ରହିଆସିଛି । ଟାରାଣ୍ଟୁଲା ବୁଢ଼ିଆଣୀ ସେହି ସହରରେ କାହାକୁ କାମୁଡ଼ିଦେବା ପରେ ବଡ଼ ମାରାତ୍ମକ ଅବସ୍ଥା ସୃଷ୍ଟି ହୋଇଥିଲା । ତା'ପରେ ସେ ବ୍ୟକ୍ତିକୁ ଏ ବୁଢ଼ିଆଣୀ ବିଷ ପ୍ରଭାବରୁ ମୁକ୍ତି ପାଇବା ପାଇଁ ଝାଳ ବାହାରି ଖୁବ୍ କ୍ଳାନ୍ତ ଓ ହାଲିଆ ହେବା ପର୍ଯ୍ୟନ୍ତ ନାଚିବାକୁ ପଡ଼ିଥିଲା । ଏ ପ୍ରକାର ନାଚର ନାମ ଥିଲା ଟାରାଣ୍ଟେଲା (Tarantella) । ସେତେବେଳେ ବିଶ୍ୱାସ କରାଯାଇଥିଲା ଯେ ଝାଳରେ ବୁଢ଼ିଆଣୀର ବିଷସବୁ କାମୁଡ଼ିଥିବା ବ୍ୟକ୍ତିଙ୍କ ଶରୀରରୁ ନିର୍ଗତ ହୋଇଯାଇଥିଲା । ତେଣୁ ନୃତ୍ୟ ପରେ ରୋଗୀଟି ଆରୋଗ୍ୟ ଲାଭ କରିଥିଲା । ଏ ସବୁ ଘଟଣା ଅନେକ ବର୍ଷ ପୂର୍ବ ଅର୍ଥାତ୍ କଲମ୍ବସ୍ ଆମେରିକା ଆବିଷ୍କାର କରିବାର ପୂର୍ବର ଇତିହାସ । ଠିକ୍ ଏହି ଆବିଷ୍କାର ପରେ ପରେ ଦକ୍ଷିଣ ଆମେରିକାର ଚଢ଼େଇଖିଆ ବୁଢ଼ିଆଣୀକୁ ଟାରାଣ୍ଟୁଲା ବୋଲି କୁହାଯାଇଥିଲା । ସେମାନଙ୍କର ବଡ଼ ଆକାର ହିଁ ଅଧିକାଂଶ ଲୋକଙ୍କୁ ଖୁବ୍ ଭୟଭୀତ କରୁଥିବାର କାରଣ ଥିଲା ଆଂଶୁଯୁକ୍ତ ଭୟଙ୍କର ଶରୀର । ଆଉ ଏ ପ୍ରକାର ଆକୃତି ହିଁ ଦକ୍ଷିଣ ଇଟାଲୀର ଲୋକମାନଙ୍କ ମନରେ ଧାରଣା ଜନ୍ମାଉଥିଲା ସେହି ଭୟଙ୍କର ବୁଢ଼ିଆଣୀ ଟାରାଣ୍ଟୁଲା ବୋଲି । ଏ ପ୍ରକାର ଭ୍ରମାତ୍ମକ



ଟାରାଣ୍ଟେଲା ନୃତ୍ୟ
କିମ୍ବଦନ୍ତୀ ଅନୁଯାୟୀ ଇଟାଲୀର ଟାରାଣ୍ଟୁଲା ବିଷରେ ରୋଗୀର ଟାରାଣ୍ଟେଲା ନୃତ୍ୟରେ ଆରୋଗ୍ୟ ଲାଭ

ଧାରଣା ବଡ଼ି ବଡ଼ି ପାଞ୍ଚ ଇଞ୍ଚ ଲମ୍ବର ଗୋଡ଼ଯୁକ୍ତ ଉତ୍ତର ଆମେରିକାର ବୁଢ଼ିଆଣୀକୁ ଭୁଲରେ କୁହାଗଲା ଟାରାଣ୍ଟୁଲା ବୋଲି । ଏଭଳି ଅନେକ ଭ୍ରମପୂର୍ଣ୍ଣ ଅବସ୍ଥାରେ ଚାବୁକ ବିଛା (Whip-scorpion) ଗୁଡ଼ିକ ଟାରାଣ୍ଟୁଲା ପରିବାରରେ (Tarantulidae) ସ୍ଥାନ ପାଇଥାଆନ୍ତି । ଅବଶ୍ୟ ଏଗୁଡ଼ିକ ବୁଢ଼ିଆଣୀ ନୁହନ୍ତି । ତେବେ ଯାହାହେଲେ ବି ଟାରାଣ୍ଟୁଲା ଏକ ସ୍ୱତନ୍ତ୍ର ପ୍ରକାରର ବୁଢ଼ିଆଣୀ ।

## ଟାରାଣ୍ଟୁଲାର ପ୍ରକାର ଓ ବିସ୍ତୃତି

ଟାରାଣ୍ଟୁଲା ଶବ୍ଦଟି ଇଟାଲୀୟ ଶବ୍ଦରୁ ଆସିଲେ ମଧ୍ୟ ବୁଢ଼ିଆଣୀଟି ଟାରାଣ୍ଟୁଲା ଭାବରେ ଅତି ଜଣାଶୁଣା । ଏ ଅଷ୍ଟପଦୀର ପରିବାର ଲାଇକୋସିଡେ (Lycosidae) । ଏହାର ବୈଜ୍ଞାନିକ ନାମ ଟାରାଣ୍ଟୁଲା (Tarantula) ପରିବର୍ତ୍ତେ ଟାରେଣ୍ଟୁଲା *(Tarentula)* । ଏ ପ୍ରଜାତିରେ ପ୍ରାୟ ବାରଟି ଜାତି (Species) ଥିବାର ଜଣାଯାଏ । ସେମାନଙ୍କ ମଧ୍ୟରେ କେତେକ ଖୁବ୍ ସାଧାରଣ ଟାରାଣ୍ଟୁଲା *(Tarentulabarbipes, Tarentula cuneata, Tarentula pulverulenta, Tarentula inquilina, Tarentula fabrilis, Tarentula narbonensis)* ।

ଭିନ୍ନ ଭିନ୍ନ ଟାରାଣ୍ଟୁଲା ପୃଥିବୀର ଭିନ୍ନ ଭିନ୍ନ ସ୍ଥାନରେ ଦେଖାଯାଆନ୍ତି । ନିମ୍ନଭୂମିଠାରୁ ଆରମ୍ଭ କରି ପର୍ବତର ୨୦୦୦ ଫୁଟ ଉଚ୍ଚରୁ ବି ଅଧିକ ଉଚ୍ଚ ସ୍ଥାନ ଏମାନଙ୍କ ବିସ୍ତୃତି । ଗୁଳ୍ମପୂର୍ଣ୍ଣ ଖୋଲା ଅନାବାଦୀ ଜମି (Moors), ଚିରହରିତ୍ କ୍ଷୁଦ୍ର ଗୁଳ୍ମଯୁକ୍ତ ସ୍ଥାନ (Heath), ଘାସ ଜମି ଏବଂ ବଣଜଙ୍ଗଲ ଆଦି ଏମାନଙ୍କର ପ୍ରିୟ ସ୍ଥାନ । ଏ ସ୍ଥାନଗୁଡ଼ିକରେ ଛୋଟଛୋଟ ଗାତ ମଧ୍ୟରେ ଏମାନେ ରୁହନ୍ତି । ମାତ୍ର ଅନ୍ୟ ମୁଖ୍ୟ କେତେକ ବୁଢ଼ିଆଣୀମାନଙ୍କ ପରି ଜାଲ ତିଆରି କରି ନ ଥାଆନ୍ତି ଏମାନେ ।

## ଟାରାଣ୍ଟୁଲାର ଆକୃତି

ଟାରାଣ୍ଟୁଲା ଦେଖିବାକୁ ଠିକ୍ ଅନ୍ୟ ବୁଢ଼ିଆଣୀମାନଙ୍କ ପରି । ସମୁଦାୟ ଶରୀରଟି ଦୁଇଟି ଛୋଟ ଛୋଟ ବଲ୍‌ପରି ଭାଗରେ ବିଭକ୍ତ । ମୁଣ୍ଡ ଭାଗଟି ଛୋଟ ବଲ୍ ପରି ଓ ପେଟଟି ମଧ ଠିକ୍ ସେହିପରି ଗୋଲାକାର । ଗୋଡ଼ଗୁଡ଼ିକ ବେଶ୍ ଲମ୍ବ । ସମୁଦାୟ ଶରୀର ଓ ଗୋଡ଼ଗୁଡ଼ିକ ଆଁଶୁରେ ପୂର୍ଣ୍ଣ । ସେଥିପାଇଁ ଦେଖିଲେ ଏମାନେ ବଡ଼ ଭୟଙ୍କର ଦେଖାଯାଆନ୍ତି । କେତେକଙ୍କ ଶରୀର ଏକ ଇଞ୍ଚ ଲମ୍ବ, କଳା କଳା ବିନ୍ଦୁଯୁକ୍ତ ଓ ଗୋଡ଼ଗୁଡ଼ିକ ଆକାରରେ ଅଧ ଇଞ୍ଚରୁ ସାମାନ୍ୟ ଅଧିକ ବା କମ୍ ।



ଟାରାଣ୍ଟୁଲା ଆକୃତି

ଏମାନଙ୍କ ମଧ୍ୟରୁ ଗୋଟିକର ପେଟରେ କଳା ଖଣ୍ଡାପରି ଏକ ଚିହ୍ନ ଥିବାର ଜଣାଯାଏ । ମୋଟାମୋଟି ସବୁ ଟାରାଣ୍ଟୁଲାଗୁଡ଼ିକର ଗୋଡ଼ଗୁଡ଼ିକ ଖୁବ୍ ଆଁଶୁଯୁକ୍ତ ଏବଂ ଅଧିକାଂଶ ଟାରାଣ୍ଟୁଲାମାନଙ୍କର ଗୋଡ଼ଗୁଡ଼ିକ ବେଶ୍ ବଡ଼ ବଡ଼ ।

## ଟାରାଣ୍ଟୁଲାର ଶିକାର ଓ ଖାଦ୍ୟ

ବୁଢ଼ିଆଣୀମାନେ ସମସ୍ତେ ଭକ୍ଷକ (Predator) । ଅନ୍ୟ ପ୍ରାଣୀମାନଙ୍କୁ ଧରି ଶିକାର କରିବା ସେମାନଙ୍କ ସ୍ୱଭାବ । ବେଳେବେଳେ ପରସ୍ପରକୁ ମଧ ଖାଇବା ସେମାନଙ୍କଠାରେ ଦେଖାଯାଏ । ଅଧିକାଂଶ ବୁଢ଼ିଆଣୀମାନଙ୍କର ମୁଖ୍ୟ ଖାଦ୍ୟ ହେଉଛି କୀଟପତଙ୍ଗାଦି ପ୍ରାଣୀ । କିନ୍ତୁ ଟାରାଣ୍ଟୁଲା ପରି କେତେକ ବୁଢ଼ିଆଣୀ ବେଳେବେଳେ ପକ୍ଷୀ ଓ ମୂଷା ଆଦି ବଡ଼ ବଡ଼ ପ୍ରାଣୀମାନଙ୍କୁ ଶିକାର କରିବାର ଜଣାଯାଏ । ଭୂଇଁ ତଳେ ଗାତ ମଧରେ ଏମାନଙ୍କ ଘର । ଘର ମୁହଁ ପାଖରେ ଏମାନେ ସବୁବେଳେ ଛକି ରହିଥାଆନ୍ତି କେତେବେଳେ ଶିକାରଟିଏ ପହଞ୍ଚିବ ବୋଲି । ପହଞ୍ଚିବା ମାତ୍ରେ ବୁଢ଼ିଆଣୀ ବିଷଦାନ୍ତ ଫୋଡ଼ି ବିଷ ପ୍ରୟୋଗ କରନ୍ତି ଶିକାର ଶରୀରକୁ । ପ୍ରାଣୀ ଅବଶ ହୋଇଯିବା ପରେ ପ୍ରାଣୀ ଶରୀରର ରସ ଶୋଷି ଶୋଷି ଖାଇଥାଆନ୍ତି ଏମାନେ । ଅନ୍ୟ ବୁଢ଼ିଆଣୀମାନଙ୍କ ପରି ଏମାନେ ଜାଲ ବୁଣନ୍ତି ନାହିଁ । ଫରାସୀ କୀଟତତ୍ତ୍ୱବିତ୍ ହେନ୍‌ରି ଫାବର୍ (Henri Fabre)ଙ୍କ ମତରେ ଏମାନଙ୍କ ବିଷ କୀଟପତଙ୍ଗମାନଙ୍କ ପାଇଁ ତତ୍‌କ୍ଷଣାତ୍ ମାରାତ୍ମକ । ତାଙ୍କ ପର୍ଯ୍ୟବେକ୍ଷଣ ଅନୁଯାୟୀ ଟାରାଣ୍ଟୁଲା ବିଷ ଗୋଟିଏ ଘରଚଟିଆ ପକ୍ଷୀକୁ ମାରିବା ପାଇଁ ତିନିଦିନ ଓ ଚୁଚୁନ୍ଦ୍ରାକୁ ଦେଢ଼ ଦିନ ସମୟ ଲାଗିଥାଏ । ଏଥିରୁ ଅନୁମାନ କରାଯାଇ ପାରେ ଯେ ଟାରାଣ୍ଟୁଲାର ବିଷ ବେଶ୍ ଉତ୍କଟ ।

## ଟାରାଣ୍ଟୁଲାର ପ୍ରଜନନ ଓ ଛୁଆ

ସମସ୍ତ ବୁଢ଼ିଆଣୀଙ୍କର ମିଳନ, ପ୍ରଣୟ ଓ ପ୍ରଜନନ ପ୍ରକ୍ରିୟା ବେଶ୍ ଆକର୍ଷଣୀୟ, ଦୀର୍ଘ ଓ ବହୁ ଶ୍ରମ-ସାଧ । ଟାରାଣ୍ଟୁଲା କ୍ଷେତ୍ରରେ କହିବାକୁ ଗଲେ ଏହା ବେଶ୍ ଉପଭୋଗ୍ୟ । ଏମାନଙ୍କ ପ୍ରଜନନ ସମ୍ପର୍କରେ ବିଶ୍ୱବିଖ୍ୟାତ ମାଙ୍କଡ଼ସାବିତ୍ ବ୍ରିଷ୍ଟୋ (W.S.Bristowe) ତାଙ୍କ ରଚିତ ବୁଢ଼ିଆଣୀ ପୁସ୍ତକ (Comity of Spiders) ରେ ଏ ସମ୍ପର୍କରେ ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଛନ୍ତି । ତାଙ୍କ ମତରେ ମିଳନ ପ୍ରକ୍ରିୟା ଆରମ୍ଭରେ ପୁରୁଷଟି ସ୍ପର୍ଶପାଦକୁ ଧୀରେ ଧୀରେ ଓ ପରେ କ୍ରମଶଃ ଖୁବ୍ ଜୋର୍‌ରେ ଉପରତଳ କରି ହଲାଇଥାଏ । ସ୍ପର୍ଶପାଦ ସହ ପେଟକୁ ମଧ ଦୁକ୍ ଦୁକ୍ ବା କମ୍ପିତ



ଆଂଶୁଯୁକ୍ତ ଶରୀର ଓ ଆଂଶୁଯୁକ୍ତ ଲମ୍ବ ଗୋଡ଼ସହ ଟାରାଣ୍ଟୁଲା ବୁଢ଼ିଆଣୀର ତା ଗର୍ତ୍ତ ପାଖରେ ଅପେକ୍ଷାରତ

କରାଇଥାଏ । ତା'ପରେ ସାମନା ଗୋଡ଼ ଦୁଇଟିକୁ ଏକାଠି ଯୋଡ଼ି, ପେଟ ଏବଂ ସ୍ପର୍ଶପାଦ ଦୁଇଟିକୁ ଏକାଠି ଥରାଇ ସ୍ତ୍ରୀ ଆଗକୁ ଝୁଙ୍କି ପଡ଼ି ତା ଚାରିପଟେ ଘିରିଘିରି ବୁଲିଥାଏ । ଏହି ସମୟରେ ପୁରୁଷ ବୁଢ଼ିଆଣୀର ପେଟଭାଗ ଭୂଇଁରେ ବାଜି ଠକ୍ ଠକ୍ ସୂକ୍ଷ୍ମ ଶବ୍ଦ ସୃଷ୍ଟି ହୋଇଥାଏ । ବ୍ରିଷ୍ଟୋ ଆଉ ଏକ ପ୍ରକାର ଟାରାଣ୍ଟୁଲା ଠାରେ ଦେଖି ପ୍ରକାଶ କରନ୍ତି ଯେ ପ୍ରଥମେ ପୁରୁଷଟି ସାମନା ଗୋଡ଼ ଦୁଇଟିକୁ ଘୋଡ଼ାପରି ବଙ୍କା କରି କିଛି ସମୟ ସ୍ତ୍ରୀ ସାମନାରେ ରହିବା ପରେ ଧୀରେ ଧୀରେ ସ୍ତ୍ରୀ ସାମନାକୁ ପାଖେଇ ଆସେ । ତା'ପରେ ସ୍ତ୍ରୀ ଚାରିପଟେ ଘିରିଘିରି ହୋଇ ବୁଲେ । ଏ ପ୍ରକ୍ରିୟା ସମାହିତ ହେବା ପରେ ମୁଣ୍ଡ ପାଖରେ ଥିବା ସ୍ପର୍ଶପାଦ ଦୁଇଟିକୁ ଯୋଡ଼ି ମୁନିଆ ଆକାର କରି ଉପରକୁ ଟେକି ରଖେ ଓ ପ୍ରଥମ ଯୋଡ଼ା ଗୋଡ଼କୁ ବଙ୍କା କରି ମଧ ଉପରକୁ ଟେକି ରଖିଥାଏ । ଏହି ଠାଣିରେ ଆଗକୁ କୁଦାମାରିବା ଆରମ୍ଭ କରେ । ଏସବୁ ପ୍ରକ୍ରିୟା ସମୟରେ ସ୍ତ୍ରୀ ଟାରାଣ୍ଟୁଲା ଚୁପ୍‌ଚାପ୍ ଥିଲେ ପୁରୁଷ ବୁଝିପାରେ ଯେ ସ୍ତ୍ରୀ ତାକୁ ଗ୍ରହଣ କରିବାକୁ ସମ୍ମତ । ତେଣୁ ପୁରୁଷର ସ୍ପର୍ଶପାଦରେ ପୂର୍ବରୁ ସଂଚିତ ଶୁକ୍ରରସ ବିନ୍ଦୁକୁ ସ୍ତ୍ରୀ ଶରୀରକୁ ଛାଡ଼ି ଦେଇଥାଏ । ଶୁକ୍ରରସକୁ ପ୍ରଥମେ ଗୋଟିଏ ସ୍ପର୍ଶପାଦରୁ ଓ ପରେ ପରେ ଅନ୍ୟପାଦରୁ ସ୍ତ୍ରୀ ଶରୀରକୁ ଛାଡ଼ିଥାଏ ।

ଶୁକ୍ରାଣୁ ଓ ଡିମ୍ବାଣୁର ମିଳନରେ ସମାୟନ ଘଟିଥାଏ । ଅନ୍ୟ ଗଧିଆ ବୁଢ଼ିଆଣୀ ପରି ମାଈ ଟାରାଣ୍ଟୁଲା ରେଶମ କୋଷା ମଧ୍ୟରେ ଅଣ୍ଡାଗୁଡ଼ିକୁ ଖୁବ୍ ଯତ୍ନ ସହକାରେ ପେଟ ତଳେ ରଖି ଯିବାଆସିବା କରୁଥାଏ । ବଡ଼ ଆଶ୍ଚର୍ଯ୍ୟର କଥା ଯେ ମାଆ ବୁଢ଼ିଆଣୀର ପେଟର ଶେଷ ମୁନିଆ ଭାଗରେ ରେଶମ କୋଷା ଏପରି ଭାବରେ ଲାଗିରହିଥାଏ ଯେ ତାହା ସହଜରେ ଖସିଯାଏ ନାହିଁ । ହାରାହାରି ୪୦ ବା ଅଧିକ ଛୁଆ ବୁଢ଼ିଆଣୀ ଅଣ୍ଡାରୁ ଫୁଟି ବାହାରିବା ମାତ୍ରକେ ମାଆର ପେଟ ଉପରକୁ ଉଠିଯାଆନ୍ତି । ବଡ଼ ହେବା ପର୍ଯ୍ୟନ୍ତ ମାଆ ଉପରେ ମଣିଷ ଛୁଆ ଲାଉ ହେବା ପରି ଦଳବଦ୍ଧ ଭାବରେ ଛୁଆଗୁଡ଼ିକ ରହିଥାଆନ୍ତି । ଟିକିଏ ବଡ଼ ହୋଇଗଲେ ମାଆ ଉପରୁ ଚାଲିଯାଇ ଖୁସିରେ ସ୍ୱାଧୀନ ଜୀବନଯାପନ କରନ୍ତି ।

**ଟାରାଣ୍ଟୁଲାର ବିଶେଷତ୍ୱ**

ଲୋକକଥା ଅନୁସାରେ ଟାରାଣ୍ଟୁଲା ଅତି ମାରାତ୍ମକ ବୁଢ଼ିଆଣୀ । ସେଥିପାଇଁ ଏ ପ୍ରକାର ବୁଢ଼ିଆଣୀ ବେଶ୍ ଜଣାଶୁଣା । ଟାରାଣ୍ଟୁଲା ବୁଢ଼ିଆଣୀ ମନୁଷ୍ୟକୁ ବିଷ ପ୍ରୟୋଗ କରିବା ପରେ ମନୁଷ୍ୟ ନାଚି ନାଚି ହାଲିଆ ହୋଇ ଆରୋଗ୍ୟ ହେବାର କାହାଣୀ ପାଇଁ ହିଁ ଟାରାଣ୍ଟୁଲା ବିଖ୍ୟାତ ଓ ନିନ୍ଦିତ । ଏଥିପାଇଁ ଏ ପ୍ରକାର ବୁଢ଼ିଆଣୀ ବେଶ୍ ଘୃଣ୍ୟ । ବିଶେଷ କରି ସମଗ୍ର ୟୁରୋପ ମହାଦେଶରେ ଏ ବୁଢ଼ିଆଣୀ ଯୋଗୁଁ ଉନ୍ମାଦ ରୋଗ (Hysteria) ମହାମାରୀ ରୂପେ ବ୍ୟାପିଯାଇଥିଲା । ଏପରି ଅନେକ କାହାଣୀ ତଥା ଲୋକକଥା, ସାହିତ୍ୟ ତଥା ବିଜ୍ଞାନ ସାହିତ୍ୟରେ ପ୍ରକାଶିତ ହେବାର ଜଣାଯାଏ । ସଂକ୍ଷେପରେ କହିବାକୁ ଗଲେ ଟାରାଣ୍ଟୁଲା ବିଷ ମାରାତ୍ମକ ହେଲେ ହେଁ ମଣିଷ ମରିଯିବାର ଦୃଷ୍ଟାନ୍ତ ପ୍ରାୟ ନାହିଁ କହିଲେ ଚଳେ । କିନ୍ତୁ ତାହା ଏତେ ସାଂଘାତିକ ନୁହେଁ– ଯେତିକି କଥା ତା ନାଆଁରେ ଶୁଣାଯାଇଥାଏ । ଇଟାଲୀର ଟାରାଣ୍ଟେଲା ନାଚ ନେଇ ଏ ବୁଢ଼ିଆଣୀ ବିଶ୍ୱବିଖ୍ୟାତ । ଇଟାଲୀର ଟରଣ୍ଟୋ ସହରର କିମ୍ବଦନ୍ତୀ ବା ଉପାଖ୍ୟାନ ହିଁ ଏ ବୁଢ଼ିଆଣୀକୁ ସମସ୍ତଙ୍କ ମନରେ ବୋଧହୁଏ ଭୟ ସଂଚାର କରି ରଖିଥିବ । ଏଥିପାଇଁ ଟାରାଣ୍ଟୁଲା ଆମ ସମସ୍ତଙ୍କ ପାଇଁ ଏକ ଅଭୁଲା ସ୍ମୃତି ହୋଇ ରହିବ ନାହିଁ କାହିଁକି ?

# ସମୁଦ୍ର ବୁଢ଼ିଆଣୀ

## ପ୍ରାଣୀ ଗନ୍ତାଘର : ଆମ ସାଗର !

କହିଲେ କହିବେ କହୁଛି ବୋଲି । ଏତେଗୁଡ଼ିଏ ମାଙ୍କଡ଼ସା ବିଷୟରେ ବର୍ଣ୍ଣନା କଲା ପରେ ବି ମାଙ୍କଡ଼ସା ସରିଲେନି । ରହିଗଲା ଆଉ ଗୋଟିଏ । ସେ ସମ୍ବନ୍ଧରେ ଏବେ ଦେଖିବା । କଥା ହେଉଛି ଯେ ଏ ପର୍ଯ୍ୟନ୍ତ ଯେତେଗୁଡ଼ିଏ ବୁଢ଼ିଆଣୀ ସମ୍ପର୍କରେ କୁହାଯାଇଥିଲା, ସେଗୁଡ଼ିକ ଥିଲେ ମୁଖ୍ୟତଃ ସ୍ଥଳଭାଗର ବୁଢ଼ିଆଣୀ ଓ ଗୋଟିଏ ପ୍ରକାର ଜଳଭାଗର ବୁଢ଼ିଆଣୀ । ଆଉ ଜଳଭାଗରେ ଦେଖାଯାଉଥିବା ବୁଢ଼ିଆଣୀଟି ଥିଲା ମଧୁରଜଳର ବୁଢ଼ିଆଣୀଟିଏ । ଏ ଆଲୋଚନାରୁ ଜଣାଯାଇଥିଲା ଯେ ବୁଢ଼ିଆଣୀମାନେ ଜଳ ଓ ସ୍ଥଳ ଉଭୟ ସ୍ଥାନରେ ଦେଖାଯାଆନ୍ତି ।

ଏବେ ଦେଖିବା ଲୁଣିପାଣିର ବୁଢ଼ିଆଣୀ କାହାଣୀ । ସମୁଦ୍ର ଏକ ବିରାଟ ଲୁଣି ଜଳଭାଗ । ସେ ମଧ ସିନ୍ଧୁ, ସାଗର ଓ ରତ୍ନାକର । ସମୁଦ୍ରରେ କେବଳ ବିଭିନ୍ନ ରକମର ଲବଣ ମିଳେ ଯେ ତାହା ନୁହେଁ ସେଠାରେ କ'ଣ ନ ମିଳେ କହିବା କଷ୍ଟ । ସେଥିପାଇଁ ତା'ର ଅନେକ ନାମ ରହିଛି । ସେଗୁଡ଼ିକ ହେଉଛି ଜଳଧି, ଅମ୍ବୁଧି, ବାରିଧି, ବାରାନିଧି, ପାରାବାର, ସାଗର, ସିନ୍ଧୁ, ଅର୍ଣ୍ଣବ, ରତ୍ନାକର, ପୟୋଧି, ପୟୋନିଧି ଓ ଉଦଧି ଇତ୍ୟାଦି । ବିଭିନ୍ନ ପ୍ରକାରର ଉଦ୍ଭିଦ ଓ ଅନେକ କିସମର କ୍ଷୁଦ୍ରାତିକ୍ଷୁଦ୍ର ପ୍ରାଣୀଠାରୁ ଆରମ୍ଭ କରି ସିଲ୍, ତିମି ପରି ବିରାଟକାୟ ପ୍ରାଣୀମାନେ ପୂରି ରହିଛନ୍ତି । ତା' ସାଙ୍ଗକୁ କେତେ ପ୍ରକାରର ରତ୍ନ ମଧ । ଏପରିକି ସାଗର ଗର୍ଭସ୍ଥ ଶାମୁକା ପେଟରୁ ମିଳୁଥିବା ମୁକ୍ତା ବା ମୋତି ସବୁ ଝିଅ ଓ ବୋହୂମାନଙ୍କର ଖୁବ୍ ପ୍ରିୟ । ସମୁଦ୍ରରେ ସାପ ବି ବାଦ୍ ଯାଇନି - ସାପ ବି ସେଠାରେ ଦେଖାଯାଏ । ଏତେ ପ୍ରକାର ପ୍ରାଣୀ ସାଗର ଗର୍ଭରେ ଅଛନ୍ତି କହିବା ବା ଗଣି ଜାଣିବା ବଡ଼ କାଠିକର ପାଠ । ତଥାପି ଏମିତି ଏକ ଛୋଟ ପ୍ରାଣୀ ଏଠା ଆଲୋଚନାର ବଡ଼ ଆକର୍ଷଣ । ସେଇଟି ହେଉଛି ବୁଢ଼ିଆଣୀ । ବିଶ୍ୱାସ ନ ହେଲେ ବି ସତ । ଲୁଣି ଜଳରେ ଓ ବେଶ୍ ଗଭୀର ସାଗର ଗର୍ଭରେ ଏମାନେ ରହିଥାଆନ୍ତି । ସଂଖ୍ୟା ସୀମିତ; ମାତ୍ର ଆକାର, ବ୍ୟବହାର ଓ ଅନ୍ତଃଗଠନ ସତରେ ବଡ଼ ବିଚିତ୍ର ।

## ସମୁଦ୍ର ବୁଢ଼ିଆଣୀର ନାମ ଓ ଘର

ସମୁଦ୍ର ବୁଢ଼ିଆଣୀ ଅନ୍ୟ ବୁଢ଼ିଆଣୀମାନଙ୍କ ପରି ଏକପ୍ରକାର ବୁଢ଼ିଆଣୀ । ଏମାନେ ସନ୍ଧିପଦ (Arthropoda) ପ୍ରାଣୀ । ଏମାନଙ୍କ ଶ୍ରେଣୀ ସାଧାରଣ ବୁଢ଼ିଆଣୀମାନଙ୍କଠାରୁ ଭିନ୍ନ (Class-Pycnogonida) । ସବୁଠାରୁ ସାଧାରଣ ସମୁଦ୍ର ବୁଢ଼ିଆଣୀର ନାମ ହେଉଛି ନିମ୍ଫନ୍ *(Nymphon)* । ଏ ପ୍ରକାର ବୁଢ଼ିଆଣୀମାନେ ସବୁ ସମୁଦ୍ର ଗର୍ଭରେ ଦେଖାଯାଆନ୍ତି । ଅଗଭୀର ସମୁଦ୍ର, ଜୁଆରିଆ ସମୁଦ୍ର ଅଞ୍ଚଳ, ପଥୁରିଆ ଓ ପାହାଡ଼ିଆ ସାଗର ଅଞ୍ଚଳ ଆଦି ସ୍ଥାନରେ ଏମାନେ ନଜରକୁ ଆସିଥାଆନ୍ତି । ବିଶେଷକରି ଅଧିକ ସଂଖ୍ୟାରେ ଦୃଷ୍ଟିଗୋଚର ହୁଅନ୍ତି ମେରୁର ସମୁଦ୍ର ଭାଗରେ ଅର୍ଥାତ୍ ଉଭୟ ସୁମେରୁ ଓ କୁମେରୁ ଅଞ୍ଚଳ (Arctic ଓ Antarctic Sea) ର ସାଗର ଜଳରେ । ପ୍ରାୟ ପାଞ୍ଚଶହ (୫୦୦) ପ୍ରକାର ସମୁଦ୍ର ବୁଢ଼ିଆଣୀ ବେଶ୍ ଗଭୀର ସମୁଦ୍ର ଜଳରେ ଥାଆନ୍ତି । ଏପରିକି ଏମାନେ ବାରହଜାର (୧୨୦୦୦) ଫୁଟ୍ ଗଭୀର ଜଳରେ ରହିବାର ଜଣାଯାଇଛି ।

## ସମୁଦ୍ର ବୁଢ଼ିଆଣୀର ଶରୀର ଗଠନ

ସମୁଦ୍ର ବୁଢ଼ିଆଣୀର ଦେହଟି ସତରେ ବଡ଼ ବିଚିତ୍ର । କହିବାକୁ ଗଲେ ଏମାନେ ଖାଲି କେବଳ

ଗୋଡ଼ଥିବା ପ୍ରାଣୀ । ଶରୀରଟି ଏତେ ସାନ ଯେ ଜଣାପଡ଼େ ନାହିଁ ତାହାର ଦେହ ଅଛି କି ନାହିଁ ବୋଲି । ଦେଖିଲେ ମନେହୁଏ ସତେ ଯେପରି କେତେଗୁଡ଼ିଏ କାଠି ଅଛି; ତା ବ୍ୟତୀତ ଦେହରେ ଆଉ କିଛି ନାହିଁ । ସ୍ଥଳଭାଗର ବୁଢ଼ିଆଣୀମାନଙ୍କ ସହ ଏମାନଙ୍କର କୌଣସି ସାମଞ୍ଜସ୍ୟ ଥିବାର ଜଣାପଡ଼େ ନାହିଁ । ସବୁଠାରୁ ସାନ ସାଗର ବୁଢ଼ିଆଣୀର ଆକାର ଗୋଟିଏ ଇଞ୍ଚର ମାତ୍ର କେତେ ଭାଗ (ଗୋଡ଼ ଲମ୍ବ ସହ ମିଶି) । ଆଉ ସବୁଠାରୁ ବଡ଼ର ଆକାର ଗୋଡ଼ ଲମ୍ବ ସହ ମିଶି ହୋଇଥାଏ ଦୁଇ ଫୁଟ ଲମ୍ବ । ଏମାନେ ଦେଖାଯାଆନ୍ତି ଖୁବ୍ ଗଭୀର ସମୁଦ୍ର ଗର୍ଭରେ । ବର୍ଣ୍ଣ ଏମାନଙ୍କର ଈଷତ୍ ହଳଦିଆ, ଗାଢ଼ ହଳଦିଆ ବା ଧୂସର । ଶରୀରଟି ଖୁବ୍ ସରୁ । ଦେହଟି ତିନିଭାଗରେ ବିଭକ୍ତ— ମୁଣ୍ଡ, ବକ୍ଷ ଓ ଉଦର । ସାମନାକୁ ରହିଥାଏ ସାନ ମୁଣ୍ଡଟି । ମୁଣ୍ଡ ପଛଭାଗକୁ ରହିଥାଏ ଦେହ ଯାହା ତିନି ଭାଗରେ ବିଭକ୍ତ । ଚାରିଯୋଡ଼ା ଗୋଡ଼ ଏ ଦେହକୁ ଲାଗି ରହିଥାଏ । ଦେହର ଶେଷ ବା ପଛ ଭାଗକୁ ଲାଗିଥାଏ ପେଟ । ପେଟର ଆକାର ବି ଖୁବ୍ ସାନ । ସାଧାରଣତଃ ଏମାନଙ୍କଠାରେ ଚାରିଯୋଡ଼ା ବା ଆଠଟି ଗୋଡ଼ ଦେଖାଗଲେ ବି କେତେଗୁଡ଼ିଏ ସାଗର ବୁଢ଼ିଆଣୀମାନଙ୍କ ଠାରେ ପାଞ୍ଚ ବା ଛଅଯୋଡ଼ା ଗୋଡ଼ ମଧ୍ୟ ଦେଖାଯାଏ । ମୁଣ୍ଡରେ ଖାଦ୍ୟ ଶୋଷି ଖାଇବା ପାଇଁ ଗୋଟିଏ ଶୋଷକ ରହିଥାଏ । ଦେଖିବାକୁ ଅତି ସାନ ଥଣ୍ଟ ପରି । ପୁରୁଷ ବୁଢ଼ିଆଣୀର ମୁଣ୍ଡ ପାଖରେ ଦୁଇକଡ଼କୁ ଗୋଟିଏ କରି ବଙ୍କା ଆକାରର ଅଙ୍ଗ ଦୁଇଟି ରହିଥାଏ । ମୁଣ୍ଡରେ ମଧ୍ୟ ଦୁଇଟି ବା ଚାରିଟି ଆଖି ରହିଥାଏ । ଆଖିଗୁଡ଼ିକ ସାଧାରଣ ଆଖି ।

## ସମୁଦ୍ର ବୁଢ଼ିଆଣୀର ଦେହ ଭିତର ଆକାର

ସମୁଦ୍ର ବୁଢ଼ିଆଣୀର ଆକାରରୁ ମନେହୁଏ ଯେ ସତେ ଯେପରି ଶରୀର ନ ଥାଇ ଆଠଟି ଗୋଡ଼ ଥିବା କ୍ଷୁଦ୍ର ପ୍ରାଣୀ ଏମାନେ ! ଗୋଡ଼ଗୁଡ଼ିକ ବେଶ୍ ସ୍ପଷ୍ଟ । ଏମାନଙ୍କୁ ପିକ୍‌ନୋଗୋନିଡ଼ା ଶ୍ରେଣୀରେ ରଖାଯିବାର କାରଣ ବୋଧହୁଏ ଅଧିକ ସଂଖ୍ୟକ ଲମ୍ବା ଲମ୍ବା ଗୋଡ଼ (Greek *pyknos* dense ଓ *gony*-knee) । ଏମାନଙ୍କ ଅନ୍ତନଳୀ ବା ଖାଦ୍ୟନଳୀ ପାର୍ଶ୍ୱରୁ କେତେଗୁଡ଼ିଏ ଥଳି ପରି ଆକାର ବାହାରି ପ୍ରତ୍ୟେକ ଗୋଡ଼ ମଧ୍ୟକୁ ଯାଇଥାଏ । ସେଥିପାଇଁ କୁହାଯାଏ ଯେ ପାକସ୍ଥଳୀର ଅଧିକାଂଶ ଭାଗ ବା ମୁଖ୍ୟ ଭାଗଗୁଡ଼ିକ ଗୋଡ଼ ମଧ୍ୟରେ ରହିଥାଏ ବୋଲି । ପ୍ରାଣିଜଗତ୍‌ରେ ଏପରି ଖାଦ୍ୟନଳୀ ସତରେ ବଡ଼ ଅଦ୍ଭୁତ ଶରୀରରେ ନଳୀପରି ଏକ ହୃତ୍‌ପିଣ୍ଡ ରହିଥାଏ । ଏହାକୁ ବାଦଦେଲେ ଅନ୍ୟାନ୍ୟ ସମସ୍ତ ଶରୀର ଭିତରର ଅଂଶ ଶରୀର ମଧ୍ୟରେ ନ ରହି ରହିଥାଏ ଗୋଡ଼ଗୁଡ଼ିକ ଭିତରେ । ଅର୍ଥାତ୍ ପ୍ରଜନନ ଅଙ୍ଗଗୁଡ଼ିକ ଗୋଡ଼ ଭିତରେ ରହିଥାଏ । ପ୍ରାଣୀରାଜ୍ୟରେ ଏ ପ୍ରକାର ବିସ୍ମୟ ବୋଧହୁଏ ଆଉ କେଉଁ ପ୍ରାଣୀଠାରେ ଦେଖାଯାଇ ନ ପାରେ । ଶରୀର ମଧ୍ୟସ୍ଥ ମୁଖ୍ୟ ଅଙ୍ଗଗୁଡ଼ିକ ଗୋଡ଼ ମଧ୍ୟରେ ରହିଥିବାରୁ ଶରୀରଟି ଖୁବ୍ କ୍ଷୁଦ୍ର ହୋଇଥାଏ ।

## ସମୁଦ୍ର ବୁଢ଼ିଆଣୀର ଖାଦ୍ୟ ଓ ବ୍ୟବହାର

ସମୁଦ୍ର ବୁଢ଼ିଆଣୀ ବାସ୍ତବିକ୍ ଏକ ଅତି ଅସାଧାରଣ ପ୍ରାଣୀ । ଶରୀର ଗଠନ ଏପରି ଯେ ଏମାନଙ୍କ ସମ୍ବନ୍ଧରେ ଅଧିକ ତଥ୍ୟ ଏବେ ବି ଅସ୍ପଷ୍ଟ । ଏମାନେ ମୁଖ୍ୟତଃ ସ୍ଥିର ସାମୁଦ୍ରିକ ପ୍ରାଣୀ ବା ଏକପ୍ରକାର ସାମୁଦ୍ରିକ ଉଦ୍ଭିଦ (Fir) ଗୁଡ଼ିକରେ ଲାଖିରହି ସମୟ କାଟନ୍ତି । ସମୁଦ୍ର ଲହଡ଼ି ବା ଢେଉ ଏପଟ ସେପଟ ହେଲାବେଳେ ଏମାନେ ଲାଖିରହି ଢେଉ ସହ ଏପାଖ ସେପାଖ ହୋଇ ଦୋହଲୁଥାଆନ୍ତି । ଯେଉଁ ବୁଢ଼ିଆଣୀଗୁଡ଼ିକ ସମୁଦ୍ର କୂଳରେ ଦେଖାଯାଆନ୍ତି ସେମାନେ ପଥର ବା ବାଲିଗରଡ଼ା ଆଦିର ତଳ ଭାଗରେ ଲୁଚିରହି ଆଶ୍ରୟ ନେଇଥା'ନ୍ତି । ଅବଶ୍ୟ ଏ ପ୍ରକାର ଆଶ୍ରୟ ନେଇଥାଆନ୍ତି ସମୁଦ୍ର ଜୁଆର ଛାଡ଼ି ଚାଲିଗଲା

ପରେ । ଜଳଜୀବଶାଳା (Aquarium) ରେ ରଖି ଲକ୍ଷ୍ୟକରାଯାଇଛି ଯେ ଏମାନେ ସ୍ଥିର ଭାବରେ ଗୋଟିଏ ସ୍ଥାନରେ ରହିଥାଆନ୍ତି । ଆଉ ଗତି କଲାବେଳେ ଗେଣ୍ଡା ଯିବା ଗତିଠାରୁ ଖୁବ୍ କମ୍ ବେଗରେ ଯାଇଥାଆନ୍ତି । ସବୁଠାରୁ ମଜା କଥା ହେଉଛି ଯେ କେତେକ ବିଷାକ୍ତ ପ୍ରାଣୀ ଶରୀରରେ ଏମାନେ ଲାଖି ରହିଲେ ବି ବିଷ କୋଷଗୁଡ଼ିକ ଏ ବୁଢ଼ିଆଣୀମାନଙ୍କର କୌଣସି କ୍ଷତି କରି ନ ଥାଏ କି ସେମାନେ ମରିଯାଇ ନ ଥାଆନ୍ତି ।

ବିଭିନ୍ନ ପ୍ରକାର ସାନ ସାନ ସାମୁଦ୍ରିକ ପ୍ରାଣୀମାନେ ହେଉଛନ୍ତି ସମୁଦ୍ର ବୁଢ଼ିଆଣୀମାନଙ୍କର ଖାଦ୍ୟ । ସେ ପ୍ରାଣୀମାନେ ହେଉଛନ୍ତି କ୍ଷୁଦ୍ରାତିକ୍ଷୁଦ୍ର ଶୈବାଳ (Microscopic Algae), ସମୁଦ୍ର ଏନେମୋନ୍ (Sea Anemone), ଜେଲିମାଛ (Jellyfish) ଓ ସମୁଦ୍ର କାକୁଡ଼ି (Sea cucumber) ଇତ୍ୟାଦି । ଏମାନେ ଏ ପ୍ରାଣୀମାନଙ୍କର ଶରୀରରେ ଲାଖିରହି ତାଙ୍କ ଚମକୁ ଫୋଡ଼ି ଥାଆନ୍ତି ଓ ତାଙ୍କ ଶରୀରର ରସକୁ ଶୋଷି ଶୋଷି ରସ ପିଇଥା'ନ୍ତି । ଅବଶ୍ୟ ଏ ପ୍ରକାର ଖାଇବା ପ୍ରଣାଳୀ ଠିକ୍ ସାଧାରଣ ବୁଢ଼ିଆଣୀମାନଙ୍କ ପରି ।

## ସମୁଦ୍ର ବୁଢ଼ିଆଣୀର ପ୍ରଜନନ ଓ ଛୁଆ

ସମୁଦ୍ର ବୁଢ଼ିଆଣୀର ପୁରୁଷ ଓ ସ୍ତ୍ରୀ ବୁଢ଼ିଆଣୀ ଦେଖିବାକୁ ସାମାନ୍ୟ ଅଲଗା ଅଲଗା । ପୁରୁଷ ବୁଢ଼ିଆଣୀର ମୁଣ୍ଡ ପାଖରେ ଦୁଇ ପାଖକୁ ଗୋଟିଏ କରି ଛୋଟିଆ ଗୋଡ଼ ପରି ଆକାର ତଳକୁ ବଙ୍କା ଆକାରରେ ରହିଥାଏ । ଏହା ବଙ୍କେଇ ପଛ କରି ମଧ ରହିଥାଏ । ଆଗକୁ ବାହାରି ନ ଥାଏ । ସ୍ତ୍ରୀ ବୁଢ଼ିଆଣୀ ଅଣ୍ଡା ଦେବା ପରେ ପୁରୁଷ ବୁଢ଼ିଆଣୀ ଗୋଡ଼ ପରି ଆକାର ସାହାଯ୍ୟରେ ଅଣ୍ଡାଗୁଡ଼ିକୁ ଧରି ରଖେ । ସ୍ତ୍ରୀ ବୁଢ଼ିଆଣୀ ଅଣ୍ଡାଗୁଡ଼ିକୁ ଛୋଟ ବଲ୍‌ପରି ଗୋଲାକାର ଆକାରରେ ଦେଇଥାଏ । ଉଭୟ ପୁରୁଷ ଓ ସ୍ତ୍ରୀ ବୁଢ଼ିଆଣୀମାନଙ୍କର ପ୍ରଜନନ ତନ୍ତ୍ର (Reproductive Organs) ଗୋଡ଼ର ମୂଳ ଭାଗ ମଧ୍ୟରେ ରହିଥାଏ । ପୁରୁଷ ଗୋଡ଼ର ଚତୁର୍ଥ ଖଣ୍ଡରେ ଏକ ରସ ନିସୃତ ଅଙ୍ଗ (Cement Secreting Organ) ରହିଥାଏ । ସ୍ତ୍ରୀ ଅଣ୍ଡାଗୁଡ଼ିକ ଦେବା ପରେ ପୁରୁଷ ସେଗୁଡ଼ିକୁ ସଂଗ୍ରହ କରି ଏକାଠି ବଲ୍‌ପରି କରେ । କେତେକ ବୁଢ଼ିଆଣୀ ପ୍ରତ୍ୟେକ ଗୋଡ଼ପରି ଆକାରରେ ଗୋଟିଏ ଗୋଟିଏ ବଲ୍‌ପରି ଅଣ୍ଡାଗୁଡ଼ିକ ଧରି ରଖେ । ଅଣ୍ଡାଗୁଡ଼ିକ ଫୁଟିବା ପରେ ଲାର୍ଭା ବାହାରି ଯାଆନ୍ତି । ଏ ଲାର୍ଭାଗୁଡ଼ିକୁ କୁହାଯାଏ ପ୍ରୋଟୋନିମ୍ଫନ୍ (Protonymphon) । ଏ ଲାର୍ଭାଗୁଡ଼ିକର ଗୋଡ଼ ନ ଥାଏ । ତଥାପି ସେମାନଙ୍କର ମୁହଁ ସାହାଯ୍ୟରେ କିଛି ସମୟ ପାଇଁ ପତ୍ର ବା ଅନ୍ୟ ପ୍ରାଣୀମାନଙ୍କ ଶରୀରରେ ସେମାନେ ଲାଖିରୁହନ୍ତି । ପରଜୀବୀ (Parasite) ପରି ଅନ୍ୟ ପ୍ରାଣୀ ଦେହର ରସ ପିଇ ବା ଶୋଷି ବଞ୍ଚନ୍ତି । ପରେ ପରେ ପ୍ରତ୍ୟେକ ଲାର୍ଭା ଦେହରେ ତିନି ଯୋଡ଼ା ଗୋଡ଼ ବାହାରେ । ଶେଷରେ ପୂର୍ଣ୍ଣାଙ୍ଗ ବୁଢ଼ିଆଣୀରେ ପରିଣତ ହୋଇ ଆଉ ଏକ ଯୋଡ଼ା ଗୋଡ଼ ବାହାରିଥାଏ । ଏହିପରି ଚାରି ଯୋଡ଼ା ଗୋଡ଼ ବାହାରିବା ପରେ ପୂର୍ଣ୍ଣାଙ୍ଗ ବୁଢ଼ିଆଣୀ ଆରାମରେ ବୁଲାଚଲା କରିଥାଏ । ତେବେ ସବୁଠାରୁ ବଡ଼ ସାମୁଦ୍ରିକ ବୁଢ଼ିଆଣୀ ବଡ଼ ହୋଇ ଦୁଇ ଫୁଟ୍ ପର୍ଯ୍ୟନ୍ତ ଲମ୍ବ ହୋଇଥାଏ । ଦୁଇ ଫୁଟ୍ ଲମ୍ବର ମାତ୍ର ଗୋଟିଏ ପ୍ରକାର ବୁଢ଼ିଆଣୀ ବୈଜ୍ଞାନିକମାନଙ୍କ ନଜରକୁ ଆସିଛି । ସେଇଟିର ନାମ ହେଉଛି *Colossendeis colossea* ।

## ସମୁଦ୍ର ବୁଢ଼ିଆଣୀ : ବୁଢ଼ିଆଣୀ ଜଗତ୍‌ର ଏକ ବିସ୍ମୟ

ବୁଢ଼ିଆଣୀ ଜଗତର ପ୍ରତ୍ୟେକ ପ୍ରକାର ବୁଢ଼ିଆଣୀଠାରେ କିଛି ନା କିଛି ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ସେଥି ମଧ୍ୟରୁ ସମୁଦ୍ର ବୁଢ଼ିଆଣୀ ବା ବାଦ ଯିବ କିପରି ! ଗୋଡ଼ଗୁଡ଼ିକ ବେଶ୍ ବଡ଼ ବଡ଼ ସାଙ୍ଗକୁ କ୍ଷୁଦ୍ରକାୟ ଶରୀରରୁ ଜଣାପଡ଼େ ନାହିଁ ଏ ଏକ ପ୍ରାଣୀ ବୋଲି । ତା ସାଙ୍ଗକୁ ଘର ଏମାନଙ୍କର ଗଭୀର ସାଗର । ଏପରି ଆକାର ସହ ଅନ୍ତଃଗଠନ କହିଲେ



ପିଠିରେ ବୋହି ନେଉଥିବା ପୁରୁଷ ସମୁଦ୍ର ବୁଢ଼ିଆଣୀ (ନିମ୍ପନ୍)

କିଏ ବା ବିଶ୍ୱାସ କରିବ ଯେ ଗୋଡ଼ଗୁଡ଼ିକ ମଧରେ ଅନ୍ତନଳୀ, ପ୍ରଜନନ ତନ୍ତ୍ର ଓ ଅନ୍ୟାନ୍ୟ କେତେକ ଅଂଶ ମଧ ଲୁଚି ରହିଥାଏ ବୋଲି ! ଏତେ ଗଭୀର ଜଳ ମଧରେ ରହିଥିବା ବେଳେ ଯେତିକି ବୈଜ୍ଞାନିକ ତଥ୍ୟ ସଂଗ୍ରହ କରାଯାଇଛି ତାହା ବେଶ୍ କିଛି ହେଲେ ମଧ ଆହୁରି ଅନେକ ତଥ୍ୟ ଆଶା କରିବା ସ୍ୱାଭାବିକ । ଯେତିକି ତଥ୍ୟ ମିଳିପାରିଛି ତାହା କେବଳ ସମ୍ଭବ ହୋଇଛି ସାଗର ଗର୍ଭରୁ ଜାଲରେ କିଛି ବୁଢ଼ିଆଣୀ ସଂଗ୍ରହ କରିବା ସମୟରେ । ସାଧାରଣ ବୁଢ଼ିଆଣୀମାନଙ୍କ ଠାରୁ ସାମୁଦ୍ରିକ ବୁଢ଼ିଆଣୀର କିଛି ସ୍ୱାତନ୍ତ୍ୟ ରହିଥିବାରୁ ବୈଜ୍ଞାନିକମାନେ ବୁଢ଼ିଆଣୀ ଶ୍ରେଣୀରେ ଏମାନଙ୍କୁ ନ ରଖି ଅନ୍ୟ ଏକ ସ୍ୱତନ୍ତ୍ର ଶ୍ରେଣୀରେ ସ୍ଥାନ ଦେଉଛନ୍ତି । ନିମ୍ପନ୍ ଶବ୍ଦଟି ସାଧାରଣ ମନେହେଲେ ହେଁ ଏହାକୁ ଏକ ସାମୁଦ୍ରିକ ବୁଢ଼ିଆଣୀ ବୋଲି ମନେରଖିବା ସହଜ ହେବ ବୋଲି ଆଶା କରାଯାଏ ।

ଅଧିକ ଗବେଷଣା ଓ ତନ୍ନ ତନ୍ନ ପର୍ଯ୍ୟବେକ୍ଷଣ ହିଁ ଏ ଦିଗରେ ବୈଜ୍ଞାନିକମାନଙ୍କୁ ଅଧିକ ତଥ୍ୟ

ଯୋଗାଇବ ଏଥିରେ ସନ୍ଦେହ ନାହିଁ । ତେବେ ପ୍ରାଥମିକ ସ୍ତରରେ ସମୁଦ୍ର ବୁଢ଼ିଆଣୀର ଶ୍ରେଣୀ (Pycnogonida) ଓ ଅନ୍ୟାନ୍ୟ ବୁଢ଼ିଆଣୀମାନଙ୍କ ଶ୍ରେଣୀ (Arachnida) ଭିତରେ ପ୍ରଭେଦକୁ ସ୍ପଷ୍ଟ ଭାବରେ ଦେଖି ବର୍ଣ୍ଣନା କରିବା ବଡ଼ ସୌଭାଗ୍ୟର କଥା । ତା'ଛଡ଼ା ସମୁଦ୍ର ବୁଢ଼ିଆଣୀ ଅଣ୍ଡାଦେବା ପରେ ପୁରୁଷ ବୁଢ଼ିଆଣୀ ଅଣ୍ଡାଗୁଡ଼ିକୁ ପିଠି ଉପରେ ବୋହିନେଇ ତା'ର ତତ୍ତ୍ୱ ନେବା ଅନ୍ୟ ଏକ ଆକର୍ଷଣୀୟ ଘଟଣା । ସାଧାରଣ ବୁଢ଼ିଆଣୀ ଅଣ୍ଡା ଦେହରୁ ସିଧା ଛୁଆ ବାହାରିବା ସ୍ଥଳେ ସମୁଦ୍ର ବୁଢ଼ିଆଣୀ ଅଣ୍ଡାରୁ ଲାର୍ଭା ଓ ଲାର୍ଭା ପରେ ବଡ଼ ହୋଇ ପୂର୍ଣ୍ଣାଙ୍ଗ ବୁଢ଼ିଆଣୀରେ ପରିଣତ ହେବା ସମୁଦ୍ର ବୁଢ଼ିଆଣୀର ଅନ୍ୟ ଏକ ବିଶେଷତ୍ୱ । ଯାହାହେଲେ ବି ବେଶ୍ ବଡ଼ ବଡ଼ ଗୋଡ଼ଗୁଡ଼ିକ ସହ ସୁସ୍ପଷ୍ଟ ଗୋଡ଼ ଗଣ୍ଠିଗୁଡ଼ିକ ଏମାନଙ୍କୁ ଚିହ୍ନିବାରେ ବେଶ୍ ସହାୟକ । ଯାହା ହେଉ ବଡ଼ ଗୌରବ ଓ ଗର୍ବର ବିଷୟ ଯେ ଆମର ବୈଜ୍ଞାନିକମାନେ ଗଭୀର ସାଗର ଗର୍ଭକୁ ଯାଇ ଯେତିକି ତଥ୍ୟ ଏ ସୂକ୍ଷ୍ମ ପ୍ରାଣୀ ବିଷୟରେ ଦେଇଯାଇଛନ୍ତି, ତାହା ଏ ପ୍ରାଣୀକୁ ଚିହ୍ନି ଜାଣିବାରେ ଯଥେଷ୍ଟ । ତଥାପି ଭବିଷ୍ୟତରେ ଆହୁରି ତଥ୍ୟକୁ ଅପେକ୍ଷା କରିବା ସ୍ୱାଭାବିକ ।



ଏମାନେ ସମୁଦ୍ର ବୁଢ଼ିଆଣୀ ନୁହଁନ୍ତି; ମାତ୍ର ଅଣ୍ଡାରୁ ଫୁଟି ଛୁଆମାନେ ଏଣେତେଣେ ଯିବାପାଇଁ ଉଦ୍ୟତ



ଏ ସମୁଦ୍ର ବୁଢ଼ିଆଣୀ ନୁହେଁ; ମାତ୍ର ମା' ପିଠିରେ ନିରାପଦରେ ଛୁଆମାନେ

# ବୁଢ଼ିଆଣୀ ନୁହେଁ ସେ ଅଷ୍ଟପଦୀ

ବୁଢ଼ିଆଣୀମାନଙ୍କୁ ଭୁଲରେ ଅନେକ କୀଟ ବୋଲି ଭାବି ଥାଆନ୍ତି । ଯେହେତୁ କୀଟ ତେଣୁ ତାଙ୍କ ଶରୀରରେ ଛଅଟି ଗୋଡ଼ ନିଶ୍ଚୟ ଥିବ ବୋଲି କହିଥାଆନ୍ତି କେତେକ । ମାତ୍ର କଥାଟି ଠିକ୍ ନୁହେଁ । ବୁଢ଼ିଆଣୀମାନେ କୀଟ ନୁହନ୍ତି କି ସେମାନଙ୍କ ଶରୀରରେ ଛଅଟି ଗୋଡ଼ ମଧ୍ୟ ଦେଖାଯାଏ ନାହିଁ । କୀଟପତଙ୍ଗ ଶ୍ରେଣୀର ସମସ୍ତ ପ୍ରାଣୀମାନଙ୍କର ଛଅଟି ଗୋଡ଼ ଥାଏ । ମାତ୍ର ବୁଢ଼ିଆଣୀମାନଙ୍କ ଶରୀରରେ ଆଠଟି ଗୋଡ଼ ଦେଖାଯାଉଥିବାରୁ ସେମାନଙ୍କୁ 'ଅଷ୍ଟପଦୀ' (Arachnida) ବୋଲି କୁହାଯାଏ । ଆଉ ଗୋଟିଏ ମଜା କଥା ହେଲା ଖାଲି ବୁଢ଼ିଆଣୀମାନଙ୍କର ଆଠଟି ଗୋଡ଼ ଥାଏ ତାହା ନୁହେଁ, ପ୍ରାଣିଜଗତ୍‌ର ସନ୍ଧିପଦ ବିଭାଗର ଆଉ କେତେକ ପ୍ରାଣୀମାନଙ୍କର ମଧ୍ୟ ଦେଖାଯାଏ ଆଠଟି ଗୋଡ଼ । କମ୍ ଜଣାପଡ଼ିଲେ ବି ଏମାନଙ୍କ ସଂଖ୍ୟା ଖୁବ୍ କମ୍ ନୁହେଁ । ଏ ପ୍ରାଣୀଗୁଡ଼ିକ ମଧ୍ୟରୁ କେତୋଟିର ଉଦାହରଣ ହେଉଛନ୍ତି ନୀଳରକ୍ତ କଙ୍କଡ଼ା (ରାମଲେଖନୀ କଙ୍କଡ଼ା), କଙ୍କଡ଼ାବିଛା, ଟିଙ୍କ, ମିଥ୍ୟା ବିଛା (False Scorpion) ସାଗର ବୁଢ଼ିଆଣୀ (Sea Spider) ଓ ଜଳ ଭାଲୁ (Water Bear) ଇତ୍ୟାଦି । ଉପରୋକ୍ତ ପ୍ରାଣୀମାନଙ୍କ ମଧ୍ୟରୁ କେତେକ ମୁଖ୍ୟ ଅଷ୍ଟପଦୀମାନଙ୍କ ବିଷୟରେ ଆଲୋଚନା କରିବା ।

**ନୀଳରକ୍ତ କଙ୍କଡ଼ା**

ନୀଳରକ୍ତ କଙ୍କଡ଼ା ଦେଖିବାକୁ ଠିକ୍ କଙ୍କଡ଼ା ପରି । ମାତ୍ର ଏହାର ପଛଭାଗରେ ମୁନିଆ କାଠି ପରି ଗୋଟିଏ ଆକାର ରହିଥିବାରୁ ଏହାକୁ ମଧ୍ୟ 'ରାମଲେଖନୀ କଙ୍କଡ଼ା' ବୋଲି କୁହାଯାଏ । ଶରୀରଟି ଏହାର ଘୋଡ଼ା ନାଲ ପରି ଦେଖିବାକୁ ହୋଇଥିବାରୁ ଏହାକୁ 'ଘୋଡ଼ାନାଲ କଙ୍କଡ଼ା' (Horse-shoe Crab) ବୋଲି କୁହାଯାଏ । ତେବେ ଇଂରାଜୀ ଭାଷାରେ ଏହାକୁ 'ରାଜକଙ୍କଡ଼ା' (King Crab) କୁହାଯିବାର କାରଣ କଙ୍କଡ଼ା ଖୋଳ ପରି ଆକାରଟି ଏହାର ବଡ଼ । ବୈଜ୍ଞାନିକମାନେ ଏହାକୁ କୁହନ୍ତି ଲିମ୍ୟୁଲସ୍ *(Limulus)* । ଏମାନେ ପ୍ରାୟ ଚାରୋଟି ପ୍ରଜାତିର ଦେଖାଯାଆନ୍ତି । ବିଶ୍ୱାସ କରାଯାଏ ଯେ ଏ ସନ୍ଧିପଦ ପ୍ରାଣୀ ହାରାହାରି ୩୫୦୦ ନିୟୁତ ବର୍ଷ ପୂର୍ବରୁ ଏ ପୃଥିବୀରେ ଦେଖାଯାଇଥିଲା । ଆଗରୁ ଯେପରି ଥିଲା ଏବେ ମଧ୍ୟ ଠିକ୍ ସେହିପରି ଦେଖିବାକୁ । ଚେହେରାରେ କିଛି ପରିବର୍ତ୍ତନ ହୋଇ ନ ଥିବାରୁ ଏହାକୁ 'ଜୀବନ୍ତ ଜୀବାଶ୍ମ' (Living Fossil) ବୋଲି କୁହାଯାଏ ।

ରାଜକଙ୍କଡ଼ାର ଘର ହେଉଛି ମୁଖ୍ୟତଃ ସମୁଦ୍ର । ସମୁଦ୍ର ବାଲିକୁ ଖୋଳି ସେଠାରେ ଗାତ କରି ବାଲି ଭିତରେ ରୁହନ୍ତି । ବିଶେଷ କରି ଭଲପାଆନ୍ତି କାଦୁଅ ପରି ସମୁଦ୍ରକୂଳିଆ ସ୍ଥାନ । ଆଟଲାଣ୍ଟିକ ମହାସାଗର, ଆମେରିକାର ନଦୀମୁହାଣ, ପ୍ରଶାନ୍ତ ମହାସାଗର, ଭାରତ ଓ ଚୀନ୍ ଉପକୂଳ ଏବଂ ମାଳୟ, ଜାଭା, ବୋର୍ଣ୍ଣିଓ, ସୁମାତ୍ରା, ଇଣ୍ଡୋନେସିଆ, ବ୍ୟାଙ୍ଗକକ୍, ଭିଏତ୍‌ନାମ ଓ ଫିଲିପାଇନ୍‌ସ ଆଦି ଦେଶର ଉପକୂଳରେ ଏମାନେ ଦେଖାଯାଆନ୍ତି । ଶାମୁକା, ଗେଣ୍ଡା, ସନ୍ଧିପଦ ପ୍ରାଣୀ, କେତେକ କୃମି ଓ ଛୋଟ ମାଛ ଆଦି ଏମାନଙ୍କର ଖାଦ୍ୟ ।

ବାସ୍ତବରେ ଏମାନଙ୍କର ରକ୍ତ ନୀଳ ନୁହେଁ । ଏମାନଙ୍କ ରକ୍ତର ବର୍ଣ୍ଣ ରଙ୍ଗବିହୀନ । ଏଥିରେ ଥିବା ଏକପ୍ରକାର ରକ୍ତକଣିକା (Haemocyanin) ପବନ ସଂସ୍ପର୍ଶରେ ଆସିଲେ ନୀଳ ବର୍ଣ୍ଣ ହୋଇଯାଉଥିବାରୁ ଏମାନଙ୍କୁ ନୀଳରକ୍ତ କଙ୍କଡ଼ା ବୋଲି କୁହାଯାଏ । ଏହାର ରକ୍ତ ଯୋଗୁଁ ଏ ପ୍ରାଣୀର ଚାହିଦା ଏବେ ଅନେକ । ଲାକ୍‌ଟିନ୍ ନାମକ


ରାଜ କଙ୍କଡ଼ା


କଙ୍କଡ଼ା ବିଛା


ମେଣ୍ଢା ଟିକ୍


ସାଧାରଣ ଟିକ୍


ସମୁଦ୍ର ବୁଢ଼ିଆଣୀ


ଜଳଭାଲୁ


ମଧୁର ଜଳ ଟିକ୍

ଏମାନେ ବୁଢ଼ିଆଣୀ ନୁହନ୍ତି : କିନ୍ତୁ ଅଷ୍ଟପଦୀ

ଏକ ପୁଷ୍ଟିସାର ଏହାର ରକ୍ତରେ ମଧ୍ୟ ଦେଖାଯାଏ । ଏହା ଅତରର ତୀବ୍ରତା ବଢ଼ାଇବାରେ ସାହାଯ୍ୟ କରେ । ଏହାର ରକ୍ତରୁ କର୍କଟ ରୋଗ ଓ ଏଡ଼ସ (AIDS) ରୋଗର ଔଷଧ ତିଆରି କରାଯିବାପାଇଁ ପ୍ରଚେଷ୍ଟା କରାଯାଉଛି । ଓଡ଼ିଶାର ବାଲେଶ୍ୱର ଉପକୂଳସ୍ଥ ଚାନ୍ଦିପୁର ଓ ବଳରାମଗଡ଼ି ସମୁଦ୍ରକୂଳରେ ଏମାନେ ବେଶି ଦେଖାଯାଆନ୍ତି । ମାଛଧରା ଜାଲ ଓ ଟ୍ରଲର ମାଡ଼ରେ ଅନେକ ରାଜକଙ୍କଡ଼ା ମରିଯିବାର ଦେଖାଯାଏ । ଏତେ ପୁରୁଣା ପ୍ରାଣୀର ଯତ୍ନ ନ ହେଲେ ବା ସଂରକ୍ଷଣ ବ୍ୟବସ୍ଥା ନ କଲେ ଏହା ଲୋପ ପାଇଯିବାର ସମ୍ଭାବନା ଅଛି । ସରକାର ଓ ଜନସାଧାରଣ ଏ ମୂଲ୍ୟବାନ ପ୍ରାଣୀର ସଂରକ୍ଷଣ ବ୍ୟବସ୍ଥା କରିବା ଉଚିତ ।

### କଙ୍କଡ଼ାବିଛା

ବିଛା ମୁଖ୍ୟତଃ ଦୁଇ ପ୍ରକାର ଯଥା – ତେନ୍ତୁଳିଆ ବିଛା (Scolopendra) ଓ କଙ୍କଡ଼ାବିଛା (Scorpion) । ତେନ୍ତୁଳିଆ ବିଛାର ଆକାର ଠିକ୍ ଆମେ ଖାଉଥିବା ତେନ୍ତୁଳି ପରି ହୋଇଥାଏ; ମାତ୍ର କଙ୍କଡ଼ାବିଛାର ଶରୀରରେ କଙ୍କଡ଼ା ଗୋଡ଼ ପରି ଦୁଇଟି ଗୋଡ଼ ଥିବାରୁ ଏହାକୁ କୁହାଯାଏ କଙ୍କଡ଼ା ବିଛା । ଆଉ ଗୋଟିଏ କଥା ହେଲା ତେନ୍ତୁଳିଆ ବିଛା ଶରୀରରେ ଗୁଡ଼ିଏ ଗୋଡ଼ ଥାଏ; କିନ୍ତୁ କଙ୍କଡ଼ା ବିଛା ଶରୀରରେ ଦେଖାଯାଏ ଆଠଟି ଗୋଡ଼ । ବିଶ୍ୱର ସବୁ ସ୍ଥାନରେ ପ୍ରାୟ ଏ କଙ୍କଡ଼ା ବିଛାଗୁଡ଼ିକ ଦେଖାଯାଆନ୍ତି । ତେବେ ଏଗୁଡ଼ିକ ନିଉଜିଲାଣ୍ଡ ଓ ଦକ୍ଷିଣ ଆମେରିକାର ପାଟାଗୋନିଆ ଅଞ୍ଚଳରେ ଆଦୌ ଦେଖାଯାଆନ୍ତି ନାହିଁ । ଏମାନେ ରାତ୍ରିଚର ଓ ଦିନବେଳେ ବାଲି, ଗାତ ଓ ପଥର ମଧ୍ୟରେ ଲୁଚି ରହିବାକୁ ଭଲ ପାଆନ୍ତି । ବର୍ଷା ଆରମ୍ଭରେ ପଥର ତଳେ ଅନେକ ସଂଖ୍ୟାରେ ଏକାଠି ରହିବାର ନଜରକୁ ଆସେ ।

ଏମାନେ ମାଂସାଶୀ ଓ ଅନ୍ୟ ପ୍ରାଣୀକୁ ମାରି ଖାଆନ୍ତି । ମୁଖ୍ୟ ଖାଦ୍ୟ ଏମାନଙ୍କର ହେଉଛି ବୁଢ଼ିଆଣୀ, କୀଟପତଙ୍ଗ ଓ ଅନ୍ୟାନ୍ୟ ଛୋଟ ଛୋଟ ଜୀବ । ଏମାନେ ଛୁଆ ଦେଇଥାଆନ୍ତି । ଥରକେ ମାଆ ବିଛା ୨୪ଟିରୁ ୩୬ଟି ପର୍ଯ୍ୟନ୍ତ କୁନି କୁନି ଛୁଆ ଜନ୍ମ କରିଥାଆନ୍ତି । ଜନ୍ମ ପରେ ଛୁଆଗୁଡ଼ିକ ମାଆ ପିଠିଉପରେ ଚଢ଼ିଯାଆନ୍ତି । ଗୋଟିଏ ସପ୍ତାହ ପରେ ଛୁଆଗୁଡ଼ିକୁ ମାଆ ପିଠିରୁ ଚାଲିଯାଇ ଏଣେତେଣେ ବୁଲି ଶିକାରରେ ଲାଗିପଡ଼ନ୍ତି । ତେବେ ଭୁଲରେ ଅନେକ କହିଥାଆନ୍ତି ଯେ ଛୁଆମାନେ ମାଆକୁ ଖାଇଯାଆନ୍ତି ବୋଲି । ଏହା ଠିକ୍ ନୁହେଁ ।

କଙ୍କଡ଼ାବିଛାର ପଛ ପାଖରେ ଏକ ବିଷାକ୍ତ ଦଂଶକ (Sting) ଥାଏ । ଏହା ବଙ୍କା ଓ ଖୁବ୍ ମୁନିଆ । ପ୍ରାଣୀଟି ବୁଲିବା ସମୟରେ ମୁଣ୍ଡ ଉପରକୁ ଏ ଦଂଶକଟି ଧନୁପରି ବଙ୍କା ଆକାରରେ ରହି ଏପାଖ ସେପାଖ କରି ବୁଲାଇଥାଏ । ହଠାତ୍ ଶତ୍ରୁ ପାଇଲେ ଦଂଶକରେ ସେ ଫୋଡ଼ି ପକାଏ । ଏହି ସମୟରେ ଦଂଶକ ଗ୍ରନ୍ଥିରେ ଥିବା ବିଷ ଝରି ଦଂଶକ ମଧ୍ୟ ଦେଇ ଶତ୍ରୁ ଦେହକୁ ଚାଲିଯାଏ । ଶତ୍ରୁ ଯନ୍ତ୍ରଣା ପାଏ । ଦଂଶିତ ସ୍ଥାନ ଫୁଲିଯାଏ । ବର୍ଣ୍ଣହୀନ ଦେଖାଯାଏ ଏବଂ କିଛି ସମୟ ପାଇଁ କଷ୍ଟ ଅନୁଭବ କରିବାକୁ ପଡ଼େ । କଙ୍କଡ଼ାବିଛା ଦଂଶକରେ ଫୋଡ଼ିବା ସ୍ଥଳେ ତେନ୍ତୁଳିଆବିଛା କାମୁଡ଼ି ଥାଏ । ଅନେକ ଲୋକ ଭୁଲରେ କହିଥାଆନ୍ତି ଯେ ତେନ୍ତୁଳିଆ ବିଛା ଲାହୁଡ଼ ମାରେ ବୋଲି । ମାତ୍ର ଏହା ଭୁଲ କଥା । ରାତ୍ରିରେ ଯିବା ସମୟରେ ଆଲୁଅ ଧରି ଗୋଡ଼ରେ ଜୋତା ପିନ୍ଧି ଗଲେ ଏହା ଆକ୍ରମଣର ସମ୍ଭାବନା ନ ଥାଏ । ବିଶେଷକରି ବର୍ଷାଋତୁ ଆରମ୍ଭରେ ରାତ୍ରିରେ ବାହାରକୁ ଗଲା ସମୟରେ ସାବଧାନ ହୋଇଗଲେ ଏହାର ଭୟ ନ ଥାଏ ।

### ଟିକ୍

ଟିକ୍‌ଗୁଡ଼ିକ ହେଉଛନ୍ତି ଅତି ସାନ ଅଷ୍ଟପଦୀ । ଶରୀରଟି ଅଣ୍ଡାକୃତି । ମୁଣ୍ଡ ଓ ଛାତିପାଖ ମିଶି ଗୋଟିଏ ଛୋଟ ଅଣ୍ଡାପରି ଦେଖାଯାଏ । ଚେଲିସେରା (ମୁଣ୍ଡ ପାଖରେ ଥିବା ଦଂଶକ) ଓ ସ୍ପର୍ଶପାଦ (Pedipalp) ଅତି ସାନ । ଏ ଦୁଇଟି

ଆକୃତି କାମୁଡ଼ିବା, ଫୋଡ଼ିବା ଓ ଶୋଷି ଖାଇବାରେ ସାହାଯ୍ୟ କରିଥାଏ । ଏମାନଙ୍କ ସହିତ ଅନେକ ଥାଆନ୍ତି ପରିଚିତ । ଏମାନେ ଆମମାନଙ୍କପାଇଁ ଏକପ୍ରକାର ଘୃଣ୍ୟ ପ୍ରାଣୀ ଭାବରେ ପରିଗଣିତ । କାରଣ ଏମାନେ ମନୁଷ୍ୟ ଓ କୁକୁର, ଗାଈ ଅନ୍ୟାନ୍ୟ ପଶୁମାନଙ୍କ ଶରୀରର ଏକ ପରଜୀବୀ । ଅନ୍ୟ ପ୍ରାଣୀମାନଙ୍କ ଶରୀରରେ ଲାଖିଯାଇ ରକ୍ତ ଶୋଷି ବଞ୍ଚିଥାଆନ୍ତି । ବିଶେଷକରି ଗୃହପାଳିତ ପଶୁମାନଙ୍କ ଶରୀରରେ ଏମାନେ ଏପରି ଲାଖି ରହିଯାଆନ୍ତି ଯେ ଛଡ଼ାଇଲେ ସହଜରେ ଛଡ଼ାଇ ହୁଏ ନାହିଁ । ଏମାନେ କେତେକ ରୋଗ ମଧ୍ୟ ସୃଷ୍ଟି କରିଥାଆନ୍ତି । କାରଣ ଏମାନେ ମଧ୍ୟସ୍ଥ ପୋଷକ (Intermediate Host) ଭାବରେ କାର୍ଯ୍ୟକରି କେତେକ ମାରାତ୍ମକ ରୋଗ ସୃଷ୍ଟି କରିବାରେ ସହାୟକ ହୋଇଥାଆନ୍ତି । ଏମାନଙ୍କ ମଧ୍ୟରୁ କେତେକ ମଧ୍ୟ କେତେଗୁଡ଼ିଏ ଗଛରେ ଅନିଷ୍ଟକାରୀ ଜୀବ ଭାବରେ ଦେଖାଯାଆନ୍ତି ।

## ସମୁଦ୍ର ବୁଢ଼ିଆଣୀ

ଆଠଟି ଗୋଡ଼ଥିବା ସମୁଦ୍ର ବୁଢ଼ିଆଣୀ (Sea Spider) ଦେଖିବାକୁ ମଧ୍ୟ ସାନ । ମୁଣ୍ଡଟି ମୁନିଆ ଓ ଶରୀରଟି ଲମ୍ବାଳିଆ । ଆଠଟି ଗୋଡ଼ ଖୁବ୍ ସରୁ ସରୁ ଓ ଦେଖିବାକୁ ଠିକ୍ ସାନ ସାନ ଜିଆପରି । ଗୋଡ଼ଗୁଡ଼ିକର ଅଗ ଖୁବ୍ ମୁନିଆ ଓ ସରୁ । ପାଟିଟି ଏପରି ଯେ ତାହା ଶୋଷିବାରେ ସାହାଯ୍ୟ କରିଥାଏ । ମୁଣ୍ଡ ଅଗରେ ଥିବା ଶୁଣ୍ଢ (Proboscis)ଟି ମୁନିଆ ହେତୁ ତାହା ଶୋଷିବା କାର୍ଯ୍ୟ କରିଥାଏ । ଏ ମୁଣ୍ଡରେ ମଧ୍ୟ ରହିଥାଏ ଚାରିଟି ସାଧାରଣ ଆଖି ଓ ସାତଯୋଡ଼ା ଉପାଙ୍ଗ । ପ୍ରତ୍ୟେକ ଗୋଡ଼ରେ ନଅ ଖଣ୍ଡ ଅଂଶ ଥାଏ । ପୁରୁଷ ଓ ସ୍ତ୍ରୀ ଅଲଗା ଅଲଗା ବାରି ହୋଇଯାଆନ୍ତି । ସ୍ତ୍ରୀ ଅଣ୍ଡାଦେବା ପରେ ପୁରୁଷ ସେ ଅଣ୍ଡାଗୁଡ଼ିକୁ ଏକ ନିର୍ଦ୍ଦିଷ୍ଟ ପ୍ରକାର ଗୋଡ଼ (Ovigerous legs) ସାହାଯ୍ୟରେ ଧରି ରଖେ । କ୍ରମେ ସେ ଅଣ୍ଡାଗୁଡ଼ିକ ଫୁଟି ଛୁଆ ବାହାରନ୍ତି ଓ ଛୁଆଗୁଡ଼ିକ ସାଗରରେ ବୁଲାଚଲା କରନ୍ତି ।

ଏ ଆଲୋଚନାରୁ ଜଣାପଡ଼େ ଖାଲି ଯେ ବୁଢ଼ିଆଣୀମାନଙ୍କର ଆଠଟି ଗୋଡ଼ ଦେଖାଯାଏ ତାହା ନୁହେଁ; ସେହି ଶ୍ରେଣୀର ଅନ୍ୟ କେତେକଙ୍କ ଶରୀରରେ ମଧ୍ୟ ରହିଛି ଆଠଟି ଗୋଡ଼ । ସେମାନେ ମଧ୍ୟ ବିଭିନ୍ନ ସ୍ଥାନ ଅର୍ଥାତ୍ କିଏ ସ୍ଥଳଭାଗରେ, କିଏ ସାଗରର ବାଲି ମଧ୍ୟରେ ତ ଆଉ କିଏ ସାଗର ଗର୍ଭର ଜଳରେ ଦେଖାଯାଆନ୍ତି । ତେବେ ଏ ଶ୍ରେଣୀର ଆଉ ଗୋଟିଏ ବୈଶିଷ୍ଟ୍ୟ ହେଉଛି ଏହାର ପୁରୁଷ ଓ ସ୍ତ୍ରୀ ହଠାତ୍ ବାହାରୁ ଜଣାପଡ଼ିଯାଆନ୍ତି, କାଁ ଭାଁ ବେଳେ ବେଳେ ବାରିହୁଏ ନାହିଁ । ଅନେକ ଏମାନଙ୍କ ମଧ୍ୟରୁ ଅଣ୍ଡାଦେବା ବେଳେ ଖୁବ୍ କମ୍‌ସଂଖ୍ୟକ ଅଷ୍ଟପଦୀ ଛୁଆ ଜନ୍ମ କରିଥାଆନ୍ତି । ଆଚାର ଓ ବ୍ୟବହାରରେ ଅନେକ ତାରତମ୍ୟ ପରିଲକ୍ଷିତ ହୋଇଥାଏ । ଏଠାରେ ସୀମିତସଂଖ୍ୟକ ଅଷ୍ଟପଦୀ ସମ୍ବନ୍ଧରେ ଆଲୋଚନା କରାଗଲେ ମଧ୍ୟ ଏ ଶ୍ରେଣୀରେ ପ୍ରାୟ, ୩୬,୦୦୦ (ଛତିଶ ହଜାର) ଜାତିର ପ୍ରାଣୀ ଅଛନ୍ତି ବୋଲି ଜଣାଯାଏ । ଏପରିକି ଏ ଶ୍ରେଣୀରେ କେତେକ ଅଛନ୍ତି ଯେଉଁମାନଙ୍କୁ ଆଜି ବି ଜୀବବିଜ୍ଞାନୀମାନେ ସନ୍ଦେହରେ ରଖିଛନ୍ତି ଏମାନେ ଅଷ୍ଟପଦୀ ହେବେ କି ନାହିଁ । ବାସ୍ତବରେ ଅଷ୍ଟପଦୀ ଶ୍ରେଣୀ ଏକ ଅଦ୍ଭୁତ ପ୍ରକାର ଶ୍ରେଣୀ ।

# ପୃଥିବୀର କେତେକ ବିଚିତ୍ର ବୁଢ଼ିଆଣୀ





ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ଜନ୍ମ ୧୯୫୮ରେ ଶ୍ରୀକ୍ଷେତ୍ର ପୁରୀରେ । ବିଜ୍ଞାନରେ ସ୍ନାତକ ଶିକ୍ଷା ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାଣିବିଜ୍ଞାନ ବିଭାଗରୁ ଉପାଧ୍ୟୁତ୍ତର ଶିକ୍ଷା ସମାପ୍ତ ୧୯୮୦ରେ । ସ୍ନାତକୋତ୍ତର ଶିକ୍ଷା ପରେ ୧୯୮୧ରେ ଯୋଗ ଦିଅନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାଣିବିଜ୍ଞାନ ବିଭାଗରେ ଅଧ୍ୟାପକ ଭାବରେ । ଅଧ୍ୟାପନା ସମୟରେ ସେହି ବିଶ୍ୱବିଦ୍ୟାଳୟରୁ ବିଦ୍ୟାଭୂଷଣ (M.Phil) ତଥା ଜର୍ମାନ ଭାଷାରେ ସାର୍ଟିଫିକେଟ୍ ଉପାଧି ହାସଲ କରନ୍ତି । ଟସର ରେଶମ ଚାଷ ସମ୍ପର୍କରେ ଗବେଷଣା ଯୋଗୁଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ବିଦ୍ୟାବିଭୂଷଣ (Ph.D.) ଉପାଧିରେ ଭୂଷିତ । ଏହା ବ୍ୟତୀତ ସେ ଇନ୍ଦିରା ଗାନ୍ଧି ମୁକ୍ତ ବିଶ୍ୱବିଦ୍ୟାଳୟରୁ ଦୂରଶିକ୍ଷାରେ ସ୍ନାତକୋତ୍ତର ଡିପ୍ଲୋମା ଓ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିବାରେ ସଫଳ । ପ୍ରାଧ୍ୟାପକ ହିସାବରେ ରେଶମ ଚାଷ, ଉତ୍ପାଦନକାରୀ କୀଟମାନଙ୍କ ସଂରକ୍ଷଣ ମାଧ୍ୟମରେ ପରିପୋଷଣକାରୀ ବିକାଶ, ବିଭିନ୍ନ ଜୀବଜନ୍ତୁ ତଥା କୋଷ ଅନୁବଂଶ ବିଜ୍ଞାନ ସମ୍ବନ୍ଧରେ ସେ ଗବେଷଣାରତ ।

ଡକ୍ଟର ମହାନ୍ତିଙ୍କର ପ୍ରାୟ ୨୦୦ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ଏହା ସହ ଦୂରଦର୍ଶନ ଓ ଆକାଶବାଣୀର ଜୀବବିଜ୍ଞାନ କାର୍ଯ୍ୟକ୍ରମ ସହ ସେ ସଂଶ୍ଳିଷ୍ଟ । ଜନପ୍ରିୟ ବିଜ୍ଞାନ ପ୍ରକାଶନ ନିମନ୍ତେ ଓଡ଼ିଶା ବିଜ୍ଞାନ ପ୍ରଚାର ସମିତି ୧୯୯୨ରେ ଲେଖକଙ୍କୁ ସମ୍ବର୍ଦ୍ଧିତ କରିବା ସହ ୧୯୯୮ରେ ଲେଖକ ହିସାବରେ ଡଃ ଗୋପାଳ ଚନ୍ଦ୍ର ପଟ୍ଟନାୟକ ସ୍ମାରକୀ ପୁରସ୍କାର ପ୍ରଦାନ କରିଛନ୍ତି । ଓଡ଼ିଆ ଭାଷାରେ ଜନାଦୃତ ପୁସ୍ତକ ରଚନା ନିମିତ୍ତ ୨୦୦୧ ମସିହାରେ ଲେଖକ ରାଜ୍ୟ ସରକାରଙ୍କ ବିଜ୍ଞାନ ଓ ବୈଷୟିକ ବିଭାଗ ଦ୍ୱାରା ପୁରସ୍କୃତ । ବିଜ୍ଞାନକୁ ଲୋକପ୍ରିୟ କରିବାରେ ନିରବଚ୍ଛିନ୍ନ ପ୍ରୟାସ ଯୋଗୁଁ ୨୦୦୨ ମସିହାରେ ବିଜ୍ଞାନ ପ୍ରଚାର ସମିତି, କଟକ ତରଫରୁ ଲେଖକ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ପ୍ଲାଟିନମ୍ ଜନ୍ମଜୟନ୍ତୀ ପୁରସ୍କାରପ୍ରାପ୍ତ । ଡକ୍ଟର ମହାନ୍ତିଙ୍କର ପଚିଶରୁ ଉର୍ଦ୍ଧ୍ୱ ଗବେଷଣାମୂଳକ ନିବନ୍ଧ ବିଭିନ୍ନ ପତ୍ରିକାରେ ପ୍ରକାଶିତ ।

---

**ବିଦ୍ୟାପୁରୀ**

ବାଲୁବଜାର, କଟକ ୭୫୩୦୦୨

ISBN 81-7411-436-X